# ମନ-ଗହ୍ୱରର ଚାଷ

ଶ୍ରୀ ଗୋପୀନାଥ ମହାନ୍ତି



MANAGAHIRARA CHASHA
A Social Novel by Sri Gopinath Mohanty
Publishers : Vidyapuri, Cuttack 753002
1986

ଦ୍ୱିତୀୟ ମୁଦ୍ରଣ ୧୯୭୧
ବିଦ୍ୟାପୁରୀ ଦ୍ୱାରା
ପୁନର୍ମୁଦ୍ରଣ ଏପ୍ରିଲ ୧୯୮୬

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ପ୍ରତିଭା ପ୍ରେସ
ତେଲେଙ୍ଗା ବଜାର, କଟକ ୭୫୩୦୦୯

ମୂଲ୍ୟ : ଟ ୧୭.୦୦

ଏହି ଲେଖକଙ୍କ ପ୍ରଣୀତ ଓ
ବିଦ୍ୟାପୁରୀ ପ୍ରକାଶିତ ଅନ୍ୟାନ୍ୟ ଗ୍ରନ୍ଥ

ଉପନ୍ୟାସ :

ମାଟି ମଟାଳ
ଅମୃତର ସନ୍ତାନ
ପରଜା
ଢଗ ଢଦୁଣ୍ଡ
ହରିଜନ
ଲୟ ବିଲୟ
ଦାଦିବୁଢ଼ା

ଜୀବନୀ :

ଧୂଳିମାଟିର ସନ୍ଥ

ଛୁଟି ଦିନରେ ସହର ଛାଡ଼ି, ଗାଁକୁ ଯେତେବେଳେ ମୁଁ ଗୋଡ଼ ବଢ଼ାଏଁ, ନଈବାଙ୍କର ବଡ଼ ଦେବଦାରୁ ଗଛ ପାଖେ ଦିନେ ଦିନେ ସେ ମୋର ମନେପଡ଼େ । ଆଜି ମୁଁ ବୁଢ଼ା ହେଲିଣି, କିନ୍ତୁ ଝୋଲମରି ଦି'ପହରେ ନଈକୂଳିଆ ଶିକ୍‌କଣ ପବନ ଯେତେବେଳେ ଦେହରେ ବାଜେ, ଆଉ ଆରପାଖର ଗହୀରିଆ ତୋଟାର ଆମ୍ବଗଛଗୁଡ଼ାକ ଦୂମେଇଲା ପରି ଦିଶେ, ମୋ'ର ଖାଲି ବାରମ୍ବାର ମନେପଡ଼େ ସେ । ଗୋଟିକିଆ ଦୋକାନ ଘରଟିଏ, ସେହିପରି ରହିଛି ଟିକିଏ ଦୂରରେ । ଆଜିକାଲି ବି ଦେଖେଁ, ଦି' ଚାରିଜଣ ମୂଢ଼ାଗୁ ଟେକେଇ ଥୋଇଦେଇ ବସି ଗପ କରୁଥାନ୍ତି ଆଉ ଗୁଆ କାଟୁଥାନ୍ତି । ତୋଟା ଭିତରେ ଦି' ଚାରିଟା ଗାଈ-ଗୋରୁ । ଛାଇ ତଳେ ଖୁରୁପି ଧରି ଗୋଟାକେତେ ଟୋକା ଟୋକୀ, ଧୋବ-ଧାଉଳିଆ ମଣିଷ ଦେଖିଲେ ବନ୍ଧ ତଳକୁ ଟିକିଏ ଗଡ଼ି ପଡ଼ନ୍ତି । ଭାବେଁ, କେଉଁଠି ଥିବ ସେ !

ମୁଁ ସେତେବେଳେ ପିଲା, ଏହି ଦୋକାନ ବାଟ ସରୁ ରାସ୍ତାବାଟେ ସେତେବେଳେ ବାଇଦ ବାଜଣା ନେଇ ଦାଣ୍ଡ କମ୍ପେଇ ଆମର ପାଲିଙ୍କି ଚାଲିଲା, ନିଦ ମଳ ମଳ ଆଖିରେ ଭାଇଙ୍କ କୋଳରୁ ମୁଣ୍ଡ ଟେକି ନାଲି ପାଟର ଚାଦରଟି ସଜାଡ଼ିଦେଇ ମୁଁ ଏପାଖ ସେପାଖ ଗୁଲୁ ଗୁଲୁ କରି ଚାହିଁଲି । ସେତେବେଳେ ରାତି, ତାରା ନିଭିଯାଉଥାନ୍ତି, କିନ୍ତୁ ଆମର ଲଣ୍ଠନରେ କୋଡ଼ିଏ ଥର ଦିନ ହୋଇ କୋଡ଼ିଏ ଥର ନିଭୁଥାଏ । ବେଳେ ବେଳେ ବୁଢ଼ା ବାରିକ ମଶାଲରେ ତେଲ ଢାଳି ଦେଉଥାଏ । ସେଇ ନାଲି ନିଆଁରେ ଦେଖୁଥିଲି, ଦି' କଡ଼ରେ ଜକାଜକି ଠେଲାଠେଲି ମଣିଷ ଗହଳି, ସାମ୍‌ନାରେ ବାଁ ପାଖରେ ଖସିପଡୁଥିବା ପିଣ୍ଡା ଉପରେ

ସବୁଠୁଁ ବେଶି, ପିଲଏ, ମାଇପେ, ମିଣିପେ ଏକାଠି ସାଲୁବାଲୁ, ନାନା କୁମ୍ଭି ମୁହାଁ ହାଉଁ ଭିତରେ ହଲର ହଲର ଜଳ, ଏକର ସେକର, ଏକା ସ୍ୱାଆରେ ମୁଟସବ ଘଙ୍ଗାଡର ବୋଲ ପବନକୁ ଚିରି ଚିରି ଆମ ଆଡ଼କୁ ଚମକ ଆସୁଥାଏ—

"ଝକ୍ରୁ-ଝକ୍ରୁ-ଝକ୍ରୁ-କ୍ରୁ-କ୍ରୁ-କ୍ରୁ—"

ଆମେ ଆଗକୁ ଚାଲିଲୁଁ ।

ତା'ପରେ ମନେଅଛି ମୋଟା ମୋଟା ପଥର ଖୁଣ୍ଟଦିଆ ଗୋଟାଏ କଡ଼ ଘର । ଦୁଆରମୁହଁରେ କେତେ ଲୋକ ପାଗ୍ରୋଟି ନେବାକୁ ଆସିଲେ । ଗନ୍ଧରେ ମୋ'ର ଛାତି ଫୁଲି ଉଠୁଥାଏ । ମନେପଡ଼େ, ସେତେବେଳେ ମୋ'ର ଖିଆଲ ହେଉଥିଲା ଭାଇଙ୍କ ସାଥିରେ ମୁଁ ବି ଜଣେ ବଡ଼ । ଶ୍ରେଷ୍ଠ, କିନ୍ତୁ ବଡ଼ । ତା'ପରେ ମନେପଡ଼େ ମୋର ଟିକି ବେକଟି ଯେତେ ଉଚ୍ଚ କରି ମୁଁ ଟେକିଲି, ମୋ'ର ଟିକି ପାଦୁଲଗୁଡ଼ିକ ଯେତେ ଛଡ଼ାରେ ଛଡ଼ାରେ ଗୁଟି ଗୁଟି ମୁଁ ପକାଇଲି, ତଥାପି ଅଜସ୍ର ଆଖିର ଉଦ୍‌ବେଗ ଆଗ୍ରହ ମୋତେ ଡେଇଁ ଯାଇ ପହଞ୍ଚିଲା ଭାଇଙ୍କ ପାଖରେ । ମୋ'ର ପିଲା ମନରେ କଷ୍ଟ ଆସିଥିଲା । ଗୁମ୍‌ସୁମ୍ ହୋଇ ବସି ରହିଥିଲି, ଟିକିଏ ଟିକିଏ ଭାବୁଥିଲି, କାହିଁକି ମୁଁ ଆସିଲି ? ତହିଁ ଆରଦିନ କଥା, ଭଜନ ବୁଢ଼ା ମୋତେ ଶିଖାଇ ଦେଇଥିଲେ, ଯା, ଭାଉଜ କ'ଣ ବାହୁନୁଛି ଶୁଣି ଆସିବୁ । ପରେ ଗଳିର ଏକଡ଼ ସେକଡ଼ ହୋଇ ହୋଇ ଅପ୍ରତିହତ କାନ୍ଦଣାର ସ୍ରୋତରେ ବାରମ୍ବାର ବାଜି ଫେରି ଯେତେବେଳେ ମୁଁ ଉଦ୍ଦେଶ୍ୟ ଭୁଲିଯାଇଥିଲି, ସେତେବେଳେ ଦେଖିଥିଲି ତାକୁ । ତା'ର ନାଲି ଜାମାଖଣ୍ଡ ବୋଧହୁଏ ମୋ'ର ମନକୁ ଟାଣିଥିଲା, ଆଉ ତା'ର ଚକଣଚିକଣ ମୁଣ୍ଡ କୁଣ୍ଡିଆ ଓ ତା ଆଖିର ଲମ୍ବ ନାଞ୍ଜୀ କଳା, ଯେ ସରୁ ହୋଇ କାନକୁ ଛୁଇଁଥିଲା । ଖଞ୍ଜାର ବେଙ୍ଗ ପାଖର କଦଳୀ ଗଛକୁ ଆଉଜି ସେ ଲୁଚି ହୋଇ ଠିଆହୋଇ ଲେମନ୍‌ଚୁସ ଖାଉଥିଲା ।

ବଢ଼ୁତା କପଟ ହେଲା ଜାଣେ ନାହିଁ, କିନ୍ତୁ ଯେ ଆଜ ମୁଁ ହାତ ଧରାଧରି ହୋଇ ଏପାଖ ସେପାଖ ବୁଲିଥିଲୁଁ, ଫୁଲ ଛିଣ୍ଡାଉଥିଲୁଁ, ଦର ଚୋଳିଥିଲୁଁ, ଲୁଚକାଳି ଖେଳୁଥିଲୁଁ । ନଚୁଟିଆ ହ'ପଦରେ ଖାଆଣ-

ପିଅଣ ପରେ ପଦାରେ ଲୋକେ ଯେତେବେଳେ ଶୋଇ ଶୋଇ ଝାଳ ମାରୁଥିଲେ, ସେତେବେଳେ କଉକଥା ଦାଣ୍ଡରେ ସବାର ଭିତରେ ଥିଲୁ ସେ ଆଉ ମୁଁ, ମନେଅଛି ସେ ହୋଇଥିଲା କନିଆ, ଆଉ ମୁଁ ବର । ଜାମାକୁ ଉପରକୁ ଟେକି ମୁହଁ ଲୁଚାଇ ଓଢ଼ଣା ଦେଇ ସେ ବସିଲା, ଆଉ ମୁଁ ବାରମ୍ବାର ତା'ର ମୁହଁ ଖୋଲିବାକୁ ଚେଷ୍ଟା କଲି । ବାରଣ କରି ସେ କହିଲା, "ଛି, ଛି, ବରମାନେ କ'ଣ ମୁହଁ ଖୋଲନ୍ତି !"

ତା'ର କଥା ଭିତରେ ଥିଲା ଗମ୍ଭୀର ଆଦେଶର ସୂଚନା । ମୁଁ ଚୁପ୍ ହୋଇ ବସି ରହିଲି । ତା'ପରେ ସବୁକୁ ସତ ସେ ଯେତେବେଳେ ଗୁଣ୍ଡୁ ଗୁଣ୍ଡୁ ହୋଇ କାନ୍ଦିବାକୁ ଲାଗିଲା, ମୁଁ ନ ହସି ରହି ପାରିଲି ନାହିଁ । ଖେଳ ମଝିରେ ଆମେ ଗେଲ କଉଁକର ହେଲୁ, ଆଉ ଧୂଳ୍‌ଧାଳ୍ ହୋଇ ନାଚିଲୁ । କିଏ ଜଣେ ଚାଣ ପାଟିରେ କହିଲା, ସବାରି କିଏ ଭାଙ୍ଗିବ ? ଆମେ ପଳେଇଲୁଁ ।

କେତେବେଳେ ତିନି ଚାରୋଟି ନୂଆବୋହୂ ଆଙ୍ଗୁଠି ଦେଖେଇ ଥଟ୍ଟା କଲେ, "ହେଇ ଦେଖ ମାଉସୀଙ୍କର କନିଆଁ ।" ଖିଲିଖିଲିଆ ହୋଇ ସେ ପଳାଇଲା । ମୁଁ ମଧ୍ୟ ମୁହଁକୁ ତଳକୁ ପୋତି ଚାଲିଗଲି ଆଗ, ଆସ୍ତେ ଆସ୍ତେ ଚାଲି ଚାଲି, ତା'ପରେ ଦଉଡ଼ି, ଦଉଡ଼ି ଦାଣ୍ଡଘରେ ଆସି ନାଲି ତକିଆରେ ଆଉଜି ବସିପଡ଼ିଲି । କିଛି ସମୟ ପରେ ଦେଖେଁ ତ ଏଣିକି ତେଣିକି ଚାହିଁଦେଇ ଜଣକ ପିଠିଆଡ଼େ ବସି ସେ ଉଙ୍କି ମାରୁଛି ।

ତା'ପରେ—ପୁଣି ବାଜା ଆଉ ଶଙ୍ଖ ଗର୍ଜିଉଠିଲା । କାନ୍ଦ କାନ୍ଦ ଏକାଠି ଅଠା ଲାଗିଲା ପରି ମେଞ୍ଚାମେଞ୍ଚି ହୋଇ କେତେଗୁଡ଼ିଏ ସ୍ତ୍ରୀଲୋକ ସବାରିପାଖେ ଭିଡ଼ ହେଲେ । ଆମେ ଯାଇ ପାଲିଙ୍କିରେ ବସିଲୁଁ । କାନ୍ଦଣା ଶୁଣି ଶୁଣି ଆପେ କାନ୍ଦିବାକୁ ମନ ହେଉଥାଏ । ପାଲିଙ୍କି ଉଠିଲା । କାନ୍ଦଣା ବଢ଼ିଲା । ଦେଖିଲି ଆମରି ଆଡ଼କୁ ଚାହିଁ ଚାହିଁ ସେ କାନ୍ଦୁଛି । ତା ମୁହଁ ଝାଉଁଳି ପଡ଼ୁଛି । ତା'ର କଇଁ ଉଠୁଥାଏ । ଆମେ ଚାଲିଗଲୁଁ । କୋଶେ ଦ' କୋଶ ଯିବା ପରେ ଯେଉଁଠି ସେ ମନ୍ଦିରଟା ପଡ଼େ, ଆଉ ଡାହାଣ-ପାଖେ ପଦ୍ମପୋଖରୀ, ହଠାତ୍ ମତେ କାହିଁକି ଭାରି କାନ୍ଦ ମାଡ଼ିଲା । ଭାଇ ପିଠିରେ ହାତ ବୁଲାଇ ଦେଇ କହିଲେ, ବୋଉ ମନେ ପଡ଼ୁଛି କିରେ ? ଭୁଣ୍ଡରୁ ମୋ'ର ବାହାରିଲା, ବୋଉ । ଆଉ ମୁଁ ମନଇଚ୍ଛା କାନ୍ଦିଲି । ଆଜି

ଭାବୁଛି କୋଉ ବୋଲି କହିବା କେବଳ ପଣ୍ଡଶ୍ରମ, ମୁଁ କାହିଁକି ବୋଲି ଗୋଟାଏ ମନଗଢ଼ା କାରଣ । ତା'ପରେ ମନେପଡ଼େ ଇସ୍କୁଲ ଜୀବନର ସରଳ ସହଜ ବସ୍ତୁତ୍ୱମିଶା ଦିନଗୁଡ଼ିକ, ଏଇ ନଈବାଲି ଉପରେ ଡୋହଲୁଥିବା ଉଦ୍ଦେଶ୍ୟହୀନ କୁହୁଡ଼ି ପରି ।

ଯାହା କିଛି ସ୍ନେହ ଆଦର ମୋ'ର ବାକି ପଡ଼ିଥିଲା, ସବୁ ଅଜାଡ଼ି ଦେଇଥିଲି ମୋ ସାଙ୍ଗପିଲା ରମା ଉପରେ, ଶାନ୍ତ ସୁନ୍ଦର କଅଁଳିଆ ଦୁର୍ବଳ ରମା ଉପରେ । ଆମର ଖୋଲି ଆସୁଥିବା ପ୍ରାଣ ପରସ୍ପରକୁ ଚିହ୍ନି ଭୁଲିଥିଲା ପଢ଼ା ଭିତରେ ଦୁଷ୍ଟାମି ଭିତରେ, ଭବିଷ୍ୟତର ବାଲି-ଦେଉଳ ତୋଳା ଭିତରେ । ସବୁଥିରେ ସେ ଆଉ ମୁଁ, ମୁଁ ଆଉ ସେ ।

ଖେଳପଡ଼ିଆରେ ଖେଳ ଶେଷରେ କେତେ ସଞ୍ଜ ଆମେ ବେଞ୍ଚ ଉପରେ ବସି ରହିଛୁଁ, ମୁହଁରେ ଭାଷା ସ୍ଫୁରି ନାହିଁ । ତା'ର ହାତପାପୁଲି ମୋ'ର ମୁଠା ଭିତରେ ଧରିଛି, ବସି ବସି ଖାଲି ଶୁଣିଛି, ନିଜ ଛାତିର ଧୂଡ଼ୁମୁଡ଼ିପିଟା ଶବ୍ଦ ।

ଆକାଶରେ ତାରା ବାହାରି ପଡ଼ିଛନ୍ତି, ପଡ଼ୋଶୀ ଘରର ପିଲାଏ କାଲିର ପଢ଼ା ମୁଖସ୍ଥ ଆରମ୍ଭ କରିଛନ୍ତି । ସ୍ଥାନରୁ ଉଠି ଶୂନ୍‌ଶାନ୍ ହୋଇ ଦୁହେଁ ଘରକୁ ଫେରିଛୁଁ ।

ଘର, ସ୍ନେହୀ ବନ୍ଧୁ ଆଉ ରମା, ଏମାନଙ୍କୁ ଛାଡ଼ି କେବେ ମୁଁ ତାକୁ ଭାବିଛି ମୋ'ର ମନେ ପଡ଼ୁନାହିଁ, କିନ୍ତୁ ଭୁଲିଯାଇ ନ ଥିଲି ବୋଧ-ହୁଏ । ତାହା ନୋହିଲେ, ଏତେ ବର୍ଷର ସ୍ମୃତି ଭିତରୁ ତାହାରି କଥା ମନେ ପଡ଼ନ୍ତା ନାହିଁ ଆଜି ।

ମ୍ୟାଟ୍ରିକ୍ ପରୀକ୍ଷା ସରିଥାଏ । ବହି ବୋଝ ଆଉ ନିୟମିତ ନିର୍ଘଣ୍ଟରୁ ଛୁଟି ପାଇଥାଏ କେଉଁଦିନୁ । ଏକାଦେଶୀ ଦୁନିଆର ଧାରା ଏଡ଼ି ପଦାକୁ ମୁହିଁ ବଢ଼ାଇଥାଏ ସେହି ନୂଆ ହୋଇ । ଦୀର୍ଘ ମୁକ୍ତି ଭିତରେ ସମୟର ଦାସତ୍ୱକୁ ଅସ୍ୱୀକାର କରି ଅବେଳାରେ ଗାଧୋଇବା, ହାତ ଦୋଓଟି ଶୁଖାଇବା ଓ ବୋଉକୁ ଅପେକ୍ଷା କରି ବସାଇବା, ବେଳବୁଡ଼େ ଶୋଇ-ରହିବା ପ୍ରଭୃତି ଅକାର୍ଯ୍ୟରୁ ଯେପରି ମୋତେ ଆନନ୍ଦ ମିଳୁଥାଏ, ସେହିପରି ମଧ୍ୟ କେତେ ନୂଆ ସ୍ୱପ୍ନ ଗଢ଼ି ମୁଁ ତନ୍ମୟ ହେଉଥାଏ । ପୃଥିବୀକୁ ସତେ କି ମୁଁ ନୂଆ ଦେଖୁଛି, ନୂଆ ଦେଖୁଛି ଆମ୍ଭ ଗୋଟାକୁ, ଘରପାଖ

ଅରମା ବଣକୁ, ଆମ ଗାଁର ନଈକୁ । ବୋଉ କହେ, "ଏତେ ଉଚ୍ଚର କାହିଁକି କରୁଛୁ ?" ଦାଦା କହନ୍ତି, "ସବୁବେଳେ ଖାଲି ସ୍କୁଲର ଗୀତ ବୋଲି ଲାଗିଛୁ, ଥାଆନ୍ତା ସତେ ଯଦି ଖଣ୍ଡେ ଭଲ କଣ—"

ଆଜି—ଲୁଚାଇବି କାହିଁକି—ସ୍ତ୍ରୀ ଜାତିକୁ କିପରି ନୂଆ ଦୃଷ୍ଟିରେ ମଧ୍ୟ ମୁଁ ଦେଖୁଛି । ମା, ଖୁଡ଼ିଭଉଣୀ, ଅପା, ଏମାନଙ୍କ ପାଖରେ ଯେତେ ମନ-ଖୋଲା ମୁଁ ହୋଇ ପାରୁନାହିଁ, ଦୁଃଖ ଯାଉ ନାହିଁ, କିନ୍ତୁ ମନଖୋଲା ଲହଡ଼ି ଭିତରେ କେତେବେଳେ କେମିତି ନିଜକୁ ମୁଁ କଳିନେଉଛି ଓ ବୁଝିଛି ପୁରାତନ ଲହଡ଼ି ଭିତରେ ଖାଲି ପାଣିବୁନ୍ଦାଟି ହୋଇ ମୁଁ ମିଶି ପାରୁନାହିଁ ।

ଝିଅଙ୍କ ସାଥିରେ ଉପରେ ପଡ଼ି ବନ୍ଧୁତା କରିବା କେବେ ମୋ ସ୍ୱଭାବରେ ନ ଥିଲା । ବର୍ତ୍ତମାନ ମଧ୍ୟ ନାହିଁ, କିନ୍ତୁ ଯେତେବେଳେ ମୁଁ ଦେଖୁଥିଲି ଯାହାର ଯେଉଁ ବିଷୟକୁ ଆଗେ ମୁଁ ନଜର ଦେଇନାହିଁ, ଗୁରୁତ୍ୱ ଦେଇ ଭାବି ନାହିଁ, ଏବେ ସେ ବିଷୟରେ ମୁଁ ସଚେତ । ତାଙ୍କ ସାନ୍ତ୍ୱ ପୂନର ଆଖିଯୋଡ଼ିକ ଏତେ ଟଳଟଳ ମୁଁ ପୂର୍ବରୁ ଭାବି ନ ଥିଲି । ଜାଣି ନ ଥିଲି ମାଳତୀର କାନ କର ଏତେ ସୁନ୍ଦର ଢଙ୍ଗେ, ଅଥବା ନଖିଆ ବାଉଁଶର ଝିଅ, ସେ କାହ୍ନୁ ଲିପିବାକୁ ଆସେ, ଏତେ ଅଯତ୍ନରେ ବଢ଼ିଥିଲେ ସୁଦ୍ଧା ତା'ର କଥାଗୁଡ଼ିକ କେତେ ଗେହ୍ଲା ଗେହ୍ଲା ଶୁଭେ ଓ ତା'ର ସ୍କୁଲଟିକୁ ଆଜି ଥରେ ନିରେଖି ଦେଖିବାକୁ ମନ ହୁଏ ।

କଲେଜ ଖୋଲିବାକୁ ଆଉ ଅଳ୍ପ ଦିନ ଥାଏ । ଯେଉଁ ବଡ଼ାପା-ପୁଅ ଭାଇଙ୍କ ବିଭାଘରକୁ ମାରକୁଣ୍ଡି ହୋଇ ଯାଇଥିଲି, ସେ ସୁନ୍ଦର ଗାଁରୁ ଫେରିଥାନ୍ତି, ସାଙ୍ଗରେ ଥାନ୍ତି ଭାଉଜ । ବିଦେଶଫେରା ଭାଉଜଙ୍କୁ ପାଇ ମନ ମୋ'ର କୁଣ୍ଢେମୋଟ ହୋଇ ଯାଇଥିଲା । ସେ ଭାରି ଥଟ୍ଟା କରନ୍ତି, କହନ୍ତି, "କହୋ ବାବୁ, କେବେ କେଉଁଠି ବନ୍ଧୁକ ଏବେ ଅଧା ଚାଲିଗଲାଣି ହେଲି ମୁଁ—ନା ନା, ଖୁଡ଼ୀ ଶୁଣିଲେ ଗାଳିଦେବେ, ଆସ ଝୋଟ ପକାଇ ଦିଏଁ ।"

ଏଇ ଭାଉଜଙ୍କୁ ବି ଯେତେକ ମୁଁ ନୂଆ କରି ଚିହ୍ନିଲି । ତାଙ୍କର ଚିଠିର ଠିକଣା ଲେଖିଦେଲି, ତାଙ୍କୁ ବଙ୍ଗଳା ଗପ ବହି ପଢ଼ିବାକୁ ଦେଲି ଓ କେତେବେଳେ କେଉଁ କାର୍ଯ୍ୟ ଫରମାସି ଦେବେ ମୁହିଁକୁ ଅପେକ୍ଷା କରି ବସି ରହିଲି । ସେତେବେଳେ ବହି ଭିତରୁ ମୁହଁ ଟେକି ମୁଁ ଖୋଜୁଥିଲି ସ୍ନେହ ଆଦର, ଦି'ପଦ ମିଠା କଥା ଓ ମାଆଳା ମଣିଷର ମାଆଁଳିଆ ପରଶ । ତାଙ୍କଠାରୁ ସେତିକି ମୁଁ ପାଇଥିଲି ।

କଲେଜ ଖୋଲିବା ଦିନ ପାଖ ହୋଇପଡ଼ିଲା ।

ଗଲାବେଳେ ଆଖି ଛଳଛଳ କରି ଭାଉଜ କହିଲେ—

“ମୁଁ ତ ଆମ ଗାଁକୁ ଚାଲିଯିବି, ଛୁଟିରେ ଆସିବଟି ଟିକିଏ ? ଆଜି ମୋ ରାଣ, ମୁଁ ମଲାଦିନ କାନ୍ଦିବ, ଚିଠି ନିଶ୍ଚୟ ଲେଖୁଥିବ, ନୋହିଲେ—”

ସେ ହସି ହସି କଥା ଉଡ଼ାଇଲେ, ତା'ପରେ କାନ୍ଦପକାଇ କହିଲେ, “ଯାଅ ଯାଅ—”

କେତେ ସ୍ମୃତିବୋଳା ଇସ୍କୁଲ ଛାଡ଼ି, ବିଦେଶରେ କଲେଜରେ ପାଠ ପଢ଼ିବାକୁ ଚାଲିଆସିଲି । ଘରଲୋକେ ଘରେ ହିଁ ରହିଲେ ।

କେବଳ ବନ୍ଧୁ ରଙ୍ଗୁ, ଯାହାର ବାଳ କେବେହେଲେ ପାଚିବ ନାହିଁ ଓ ଦାନ୍ତ କେବେହେଲେ ପଡ଼ିବ ନାହିଁ, ସେହି ରଙ୍ଗୁ ମଟରରେ ଚଢ଼ି ରେଲଷ୍ଟେସନ ପର୍ଯ୍ୟନ୍ତ ଗୋଡ଼ାଇ ଆସିଥିଲା । ଗାଡ଼ି ଛାଡ଼ିଦେଲାରୁ କହିଥିଲା, “ଚିଠି ଦବୁ” ଓ ମୁଁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ତା'ର ଜାପାନୀ ରୁମାଲଖଣ୍ଡିକ ହଲାଉଥିଲା ।

କଟକ କଲେଜରେ ପହିଲି ବର୍ଷ । ତିନିଜଣିଆ ବଖରାଟିଏ ପାଇ- ଥାଏଁ, ଉପର ମହାଲରେ ଝରକା ପାଖେ ମୋ ଟେବୁଲ ଓ ଖଟ ।

କାନ୍ଥରେ ଖବରକାଗଜ ମାରି ହୁକରେ ମୋ କାମିଜ କୋଟ ଝୁଲାଇଦେଲି । ଦୁଇଖଣ୍ଡି ଛବି କ୍ୟାଲେଣ୍ଡର, ଯୋଡ଼ାଏ ଜାପାନୀ ଫଟୋ ତିଆରି ସିନେମା, ଖଣ୍ଡେ ବିବେକାନନ୍ଦ ଫଟୋ, ଖଣ୍ଡିଏ ମହାତ୍ମାଙ୍କ ଛବି,

ଓ ଖଣ୍ଡିଏ ରୁପା-ତଳେଇ ସରସ୍ୱତୀ ମୂର୍ତ୍ତି, ଏତକରେ ମୋ ଆହ୍ଲାଦ ସୁନ୍ଦର ହୋଇଗଲା ।

ତା'ପରେ ମୁଁ ପାଠପଢ଼ାରେ ମନ ଦେଲି । ମୁଁ ଥିଲି ଟିକିଏ କଲୁଟିଆ ମନର ମଣିଷ, ଯାହାର ଭିତରେ ଏପରି କିଛି ଥାଏ, ଯାହା ମଣିଷକୁ ଏକୁଟିଆ ଏକୁଟିଆ କରିଦିଏ । ଖେଳେ, ହସେ, ପାଟିକରେ, ମନଦେଇ ପାଠପଢ଼େ, କିନ୍ତୁ ବେଳ ଆସେ, ଯେତେବେଳେ ମତେ ଭାରି ଏକୁଟିଆ କଲୁଟିଆ ଲାଗେ, ସତେକି କ'ଣ ମୋ ମନ ଭିତରେ କୁହୁକୁହୁ । ଖାଲି ଉଦାସ ଉଦାସ ଲାଗେ ।

ବେଳ ମହଳଣ ସମୟରେ—ଖେଳପଡ଼ିଆ ଆଡ଼କୁ ଅନାଇଁ ମୁଁ ବସିଥାଏଁ, କିନ୍ତୁ ଏତେ ପିଲାଙ୍କ ଚହଳ ଓ ଗହଳ ଉପରେ ମୋ'ର ଆଖି ଉଭରିଦିଏ ନାହିଁ, ମୁଁ ଚାହିଁ ରହିଥାଏ ଖାଲି ଆକାଶକୁ—ଯେ ମୋ'ର ମନ ପରି ଉଦାସ, ଆଉ ଶୂନ୍ୟ, ଏମିତି ଆକାଶ, ଯେ ଭାରି ଏକୁଟିଆ, ଯାହାର କେହି ନାହିଁ—

ଭାବିଚାରେଁ କି କିଛି ? କ'ଣ ଯେ ଭାବେ ସେ ମତେ ବି ଅଜଣା, ଖାଲି ଝୁରେ, ଝୁରି ଝୁରି ଝିଡ଼ିପଡ଼େଁ— ।

ଚେଣ୍ଣ ମୋ'ର ଖାରି ପ୍ରିୟ, ଏଇ ଧଞ୍ଜପଦର ଆଉ ମୋର ଭାବନା ।

ପାଖଘରୁ ଗୌରବାବୁ ବଇଁଶୀରେ ନିତିଦିନିଆ ସେଇ ଗୋଟିଏ କରୁଣ ରାଗିଣୀ ଆଳାପ କରନ୍ତି । ଭାବନା ହଳେଇ ଅନ୍ଧାରରେ ମୋ'ର ମନ ଭିତରେ ରହିଯାଇ ହୁଏ । ତାଙ୍କର ରାଗିଣୀ, ଦୂରରେ ରାସ୍ତାର ବିଜୁଳି ଆଲୁଅ ଓ ପଡ଼ିଆ ସେପାଖରେ ଥିବା ମୁହିଁ ଲୁଚାଇ କାନ୍ଦିଲା ପରି ସେଇ ଗଛ କେଇଟା ଅନ୍ଧାରକୁ ଆହୁରି ମୁନିଆଁ କରିଦିଅନ୍ତି, ମୁଁ ଉଠି ବିଜୁଳି ଆଲୁଅର ସୁଇଚ୍ ଟିପିଦିଏ ।

ତା'ପରେ ବସି ଗପ ଲେଖେଁ ।

ଏମିତିପରି ମୋ'ର ଦିନ କଟିଯାଏ । ସେଦିନ ପୁଣୀ ଭାଇଜନେ୍ୋହ, ଗପ ଲେଖିଲେ, ପୂଜା ଛୁଟିକୁ ନିଶ୍ଚେ ଆସିବ । ଗପଟି ଭାରି ଭଲ

ଲାଗିଲା । ଆଜି ଆଜି ଶଠି ସଞ୍ଚିତ ସୁଟ୍‌କେଶ ଭିତରେ ସାଇତି ଥୋଇ-
ଦେଲି । ଶଠି ଖଣ୍ଡିଏ ଶରିବାକୁ ମୋ'ର ହାତ ଯାଏ ନାହିଁ, ଶଠି
ମୁହୂର୍ତ୍ତକର ମନର ସ୍ପର୍ଶ, ଯାହା ଆଉ ଆସିବ ନାହିଁ ଫେରି ।

ଛୁଟି ହେଲା । ଭଜନଙ୍କ ଗାଁରେ ପହଞ୍ଚିଲି । ବାଟ ଚାଲିବା ବାଧିଲା ନାହିଁ । ବାଧିଲା ଭିତରକୁ ପଶିଲାବେଳେ, ନୂଆ ଜାଗାରେ ମୋ'ର ଗୋଠଖଣ୍ଡିଆ ସ୍ୱଭାବ ପଦାରେ ପଡ଼େ । ପାଟିରେ ଅଠା ଲାଗିଯାଏ । ଖୁବ୍ ଗମ୍ଭୀର ହୋଇ ନିଜ ମନକୁ ସମ୍ଭାଳି ଧରି କୁଞ୍ଚ ଓହ୍ଲାଇ ଦେଇ ଉଞ୍ଚ ପାହାଚ ଉପରେ ଗୋଟିଏ ଗୋଟିଏ ହୋଇ ଉଠିଲି ।

କାଲି ପରି ଲାଗୁଛି ।

ଦାଣ୍ଡରେ କୁଅମୂଳେ ଦି' ଚାରିଟା ପିଲା ଫନ୍ଦ ଧରି ଉହ୍ଲକି ଦେଖୁଥାନ୍ତି ଓ ଟେକା ଫୋପାଡ଼ୁଥାନ୍ତି ବୋଧହୁଏ ବେଙ୍ଗକୁ । ଗୋଟାଏ ଖୋଲା ବଳଦଗାଡ଼ି ଡେରା ହୋଇ ଥୁଆ ହୋଇଥାଏ ଗୋଟାଏ କଡ଼ରେ ।

ପ୍ରଥମେ ହିଁ ବୁଢ଼ା ବୁଢ଼ୀ ଯାହାଙ୍କୁ ଦେଖିଲି ମୁଣ୍ଡକୁ ମାଟିରେ ଛୁଆଁଇ ସେମାନଙ୍କୁ ଦଣ୍ଡବତ କରିଦେଲି । ମନେ ମନେ କ'ଣ ଭାବିଥିବେ କେଜାଣି, ଚକିତ ଚକିତ ହୋଇ ମୁହଁ ଚାହାଁଚାହିଁ ହେଲେ ଓ ଆଶୀବାଦ କଲେ ।

ତା'ପରେ ଆସିଲେ ଆମ ଭଜନଙ୍କ ବାପା, ଆଉ ତାଙ୍କ ପଛେ ପଛେ ତାଙ୍କର ବଡ଼ ଭାଇ କାଳିବାବୁ, କଟକରେ ଡାକ୍ତରି ପଢ଼ନ୍ତି ଓ ଫୁଟ୍‌ବଲ ଖେଳନ୍ତି ।

ଯେତେ ଅଡ଼ୁଆ ଅଡ଼ୁଆ ଲାଗିବ ବୋଲି ଭାବିଥିଲି ପ୍ରକୃତରେ ସେତେ ଅସଜ ହେଲା ନାହିଁ । ଏକେ ତ ମୁଁ ମୋଟେ ଫାଷ୍ଟ ଇୟର ପିଲା, ପୁଣି ଟିକିଏ ବାଙ୍ଗର, ଭଜନ ବି ନୂଆବୋହୂ ନୁହନ୍ତି, ସେ ମୋଠୁ ବୟସରେ ବି ଖୁବ୍ ବଡ଼ । କେହି ତେଣୁ ଲାଜ କଲେ ନାହିଁ ।

ଯାହାର ଯାହା ଅଛା ନକଲ କରିବାକୁ ଥିଲା, ସେ ପହିଲି ଦିନରେ ହିଁ ସରିଗଲା । ତା'ପରେ ଭଲ ଲାଗିଲା ।

କାଳିବାବୁ ତହିଁ ଆରଦିନ ଚାଲିଗଲେ । ମୁଁ ଏକୁଟିଆ ପଡ଼ିଗଲି ।

ତାସ ଖେଳ ମୋ'ର ଖୁବ ପ୍ରିୟ । ବ୍ରିଜ୍ ନିଶା ହିଁ ଏତେ ଚଞ୍ଚଳ ମତେ ସେଠି ଘରମଣେଇଁ ଦେଇଥିଲା । ମଝିରେ ମଝିରେ ଖଣ୍ଡିଏ ଲେଖାଁ ଗାନ—ସାଧା ଗାନ ମୁଁ ନୂଆ ଅଭ୍ୟାସ କରି ଶିଖିଥାଏଁ; —ବାଜିକି ପରେ ବାଜିଏ କରି ତାସ, ଦୁ'ପହର ଗୋଟାକ କଟିଯାଏ । ନୂଆ ବୋହୂମାନେ ଅଳସ ଭଙ୍ଗି କହନ୍ତି, "କେତେଥର ଗୁଣିକା ଖିସ ପକେଇଲ ମୁଁ, ଅପା !"

ଭଲ ନାଁଟିଏ ତା'ର, ରେଣୁକା । ସେଦିନ କଥା ପଡ଼ୁ ପଡ଼ୁ ମାଉଲୁଣି ବେଳ କଥା ବ୍ରିଜ୍ ଖେଳୁ ଖେଳୁ ଚର୍ଚ୍ଚା ହୋଇଗଲା । ଜଣେ କହିଲେ, "ଜମା କାହା ପାଖ ପଶିଲ ନାହିଁ ମୁଁ ଅପା, ଯୋଉ ଘଡ଼ିକ ଏଠି ଥିଲି ଖାଲି ସବୁବେଳେ ରେଣୁ ପାଖେ । ଆଜ କାହାରି···ପାଖେ ପଶିଲି ନାଇ ।"

ରେଣୁକା ସେଠି ବସି ଖେଳ ଦେଖୁଥିଲା । ତାକୁ ଉପଲକ୍ଷ୍ୟ କରି ଥଟ୍ଟା ନକଲ, ଦୁଇପଦ ହୋଇଗଲା ଉତ୍ତରୁ କେମିତି କେମିତି ହୋଇ କହିଲା, "ଆରେ···।"

ଭାଉଜ କଥା ବୁଲେଇ ଦେଇ କହିଲେ, "ଗଲୁ ଲୋ ରେଣୁ, ଗାନ ଖଣ୍ଡିଏ ଭାଙ୍ଗି ଆଣିବୁ, ପାଟି ଅଠା ଅଠା ହୋଇ-ଯାଉଛି ।"

"ଏଁ ଭାଉଜ, କ'ଣ ଦାନ୍ତ ଧୋବାଘରେ ପକେଇଚ କି ସକାଳୁ ? ହେ ରେଣୁ, ଭାଉଜଙ୍କପାଇଁ ଦୁ' ଖଣ୍ଡ ସାଧା ଗାନ ଭାଙ୍ଗି ଆଣିବୁ ।"

ରେଣୁକା ମତେ ଲାଜ କରିବାକୁ ଚେଷ୍ଟା କରିଥିଲା । ତା' ବୋଉ କହିଲେ, "କାଲେ ଟୋକୀ ପର ଘର ହେବ, ପୁଣି ଗୋଟାଏ ଲାଜ କ'ଣ ମୁଁ । ଦୁଧଦାନ୍ତ ଭାଙ୍ଗି ନାହିଁ ପିଲାଟାର—ତା' ଭିତରେ ମୋ ଭିତରେ ଥଟ୍ଟା ନକଲ କେବେ ହୋଇନାହିଁ, ଅତି ବେଶିରେ ସେ କେତେବେଳେ ଲୁଚିଛପି ମୋ ଉପରକୁ କଦଳୀଚୋପା ଫୋପାଡ଼ୁଛି ଓ ଦାନ୍ତ ନିକୁଟିଛି, ଗାନ ଦେଇଁ ଦେଇଁ ହାତ ନଖରେ ଚନ୍ଦନଲଗା ସିନ୍ଦୂର ମୁହଁରେ ମୁଣ୍ଡରେ ନାଲି ରଙ୍ଗ ବୋଳି ହେଇଛି, ଆଜ ମୁଁ ତା'ର ହାତ କବୁଜି ପାଖରେ ଧରିପକାଇ ବୁଢ଼ା ଆଙ୍ଗୁଠିରେ ଖୁବ୍ ଜୋର୍‌ରେ ଚିପି ହାଡ଼କୁ

ଠକ୍ ଠକ୍ କରନ୍ତୁ, ଥଣ୍ଡା ମୋତେ ଏତକ । ମୋତେ ଥଣ୍ଡା କଅ ଆସେ ନାହିଁ । ଆମେ ଦଳ ସ୍କୋଚରେ ମିଶିଲୁଁ । ଦ'ପହରେ ବ୍ରିଜ୍ ଖେଳ ବସିଲେ, ବରାବର ସେ ମୋର ଶତ୍ରୁ ପକ୍ଷରେ ଥାଏ । ତେଣୁ ପାଖକୁ ପାଖ ଆମେ ବସିଥାଉଁ । ମୁହିଁ ଉହୁଁ କେଇ ତା ହାତରେ ଖେଳତକ ମୁଁ ଦେଖିବାକୁ ବାରମ୍ବାର ଚେଷ୍ଟା କରେ, ତାସ ଲୁଚେଇ ଧରି ମୁହିଁ ବୁଲେଇ ସେ କହେ—

"ଆରେ— ! ଦେଖିଲୁ ଅପା !"

ଭାଉଜଙ୍କର ସେଇ ଗୋଟିଏ ବୋଲ ଭଉଣୀ ସେ ରେଣୁକା, ଘର ଭଲ ପାଆନ୍ତି ତାକୁ, ସେ ତାଙ୍କର ହାତବାରସି ।

ସେ ନଜେ ଆମ ଘରକୁ ଗଲବେଳେ ରେଣୁକା ଏତକ ଟିକଏ ହୋଇଥିଲ, ସେତକ ତାଙ୍କର ମନେଅଛି । ଏତକ ଟିକଏରୁ ଏତ୍ତିକିଏ ସେ ହେଲଣି, ତାଙ୍କ ଆଖିରେ ସେ ସେହିପରି ରହିଛି । ଆଜି ସେହିପରି ରହିଛି ମୁଁ, ସବୁଦିନେ ପିଲାଟିଏ ତାଙ୍କ ଆଗରେ ।

ଆଜି ସେ ନଜେ ? ତାଙ୍କର ଖାଲି ମନେପଡ଼େ ସେହି ପିଲାଦିନର କଥା । ଯେତେବେଳେ ସେ ବଡ଼ ହୋଇଗଲେ । ସମସ୍ତ ପଟୁଆର କରି ଆଗକୁ ଆଗକୁ ଗ୍ଲଲେ, ମନଟା ଖୋଜେ ଫେରେଇ ପଛେଇ ହେବାକୁ । କାହିଁକି ତାଙ୍କ ଆଗେ ଆମେ ପିଲା ? କାରଣ ଆମକୁ ପିଲା ଭାବିଲେ ନଜର ଏଇ ନଅ ବରଷର ବୟସର ଲହଡ଼ିକୁ ପଛୁଆଣି କରିନେଇ ତୁଳନାତ୍ମକ ସ୍ମୃତି ଭିତରେ ନଜକୁ ସେହି ସତର ବର୍ଷରେ ନୂଆବୋହୂଟି ବୋଲି ତାଙ୍କର ମନର ଗହ୍ୱର ଚେତନା ଅନୁଭବ କରେ ।

ମୁଁ ବି କଅଁଳ ହୋଇଆସେ । ଭାବେ ମୁଁ ବଢ଼ି ନାହିଁ···।

ରେଣୁକୁ ସେ ଘର ଭଲ ପାଆନ୍ତି । ତେଣୁ ତାକୁ ଘର ଛଡ଼ାନ୍ତି । ରେଣୁ ତାକୁ ଚୁମୁଟି ଆଙ୍ଗୁଠି ପକାଏ, ତା'ର ହାତ ଦ'ଟାକୁ ଝିଙ୍କି ଝାଙ୍କି ପକାଏ, ଭାଉଜବୋଉ କହନ୍ତି—

"ହେ ଘଇତାନ ମାର୍କଣ୍ଡ଼, ପାରିବୁ ନା କ'ଣ ଲୋ ମୋ ସାଙ୍ଗରେ— ।"

ମୁଁ ମନେ ମନେ ଭାରି ଖୁସିଯାଏଁ, ହସେଁ । ରେଣୁକା ଉଡ଼ଣୀ ପିଠିରେ ମୁହଁ ଲୁଚେଇ ମୁହଁ ଭ୍ରୂକୁଞ୍ଚି କରି ମତେ ଦାନ୍ତ ଦେଖାଏ ।

ଅଜ ଆଜ ମଣିଷଙ୍କୁ ତ ଦେଖିଥିଲି ସେଠି, ସେମାନେ ମନେ ନାହାନ୍ତି କାହିଁକି ? ଗଲେ ସେମାନେ ସପ ପାରେଦେଇଛନ୍ତି, କହୁଛନ୍ତି, ବସ ।

ମୁଁ ଗୁରୁଗମ୍ଭୀର ହୋଇ ବସିଛୁ । କଥା କହୁଛୁ, ସୁଖଦୁଃଖ ପଚାରୁଛୁ, ସୁଖ ଦୁଃଖ କହୁଛୁ, ଛୁଆ କାଖେଇଛୁ, ପିଲାଙ୍କୁ ଗେଲ କରୁଛୁ, ସେମାନେ କହୁଛନ୍ତି, "ଛି ଛି, ଜାମା ହଳଦୀ ହୋଇଯିବ ।"

କେତେଠି ବସିଛୁ, କେତେଠି ଶୁଣିଛୁ, "ହଇଅ ଗୋ ବୋହୂ ବୋଅ, ଏଇଆଙ୍କୁ ପୁଣି ଏତେ ନାଜ ?"

ମୁହିଁ ଆଗରେ ଓଢ଼ଣା ଓହଳାଇ ଦେଇ କାଚ ଝୁଣ୍ଟ ଝୁଣ୍ଟ ହାତରେ ପାନରେ ଚୂନ ଲଗାଇ ଦେଇଛନ୍ତି, ହାତକୁ ବଢ଼ାଇ ଦେଇଛନ୍ତି ।

ପୁଣି ସେସବୁ ଭୁଳନାମ୍ବିକା ସ୍ମୃତି ଭିତରେ କେତେ ଛବି ଯାଇଛୁ ନଭି, ଆଜ ସହଜରେ ମନେ ପଡ଼ୁନାହିଁ ।

କିନ୍ତୁ ରେଣୁକା କଥା ମୁଁ ଭୁଲି ନାହିଁ, କାରଣ ତା' କଥା ମୁଁ କେବେ ଭାବି ନାହିଁ । ମୁଁ ତା' ପାଖେ କେବେ କୁଣିଆଁ ହୋଇନାହିଁ, ସେ କେବେ ହୋଇନାହିଁ ପର ।

ସେଦିନ ଖରାବେଳେ— ।

ଗଲା ରାତିରେ ଆମେ ସବୁ ଉଜାଗର ହୋଇ ବସି ଟ୍ୱେଣ୍ଟିନାଇନ୍ ଖେଳୁ ଖେଳୁ ବହୁତ ରାତି ହୋଇଯାଇଥିଲା ।

ତେଣୁ ଖରାବେଳେ ମୁଁ ଶୋଇପଡ଼ିଥିଲି । ନିଦବାଉଳାରେ ଆପଣା ଦେହ ଉପରେ କେତେ ଚଟକଣା ମୁଁ ମାରି ହୋଇଛୁ ଜାଣେ ନାହିଁ, କିନ୍ତୁ ଟିକିଏ ଟିକିଏ ଚେତ ଆସିବାରୁ ମତେ ଲାଗିଲା ଯେମିତି ଗୋଟାଏ ମାଛି ଦୁଗୁଣେଇ ହୋଇ ମୋ ଦେହ ଉପରେ ବସୁଛି, ଏଠୁ ଉଠି ସେଠି ବସୁଛି । ଆପଣା କାନ ଉପରେ ଏକ ବ୍ରହ୍ମଚାପୁଡ଼ା ମାରି ହୋଇ ମୋ'ର ହୋସ୍ ଆସିଗଲା, ଆଉ ଧାଙ୍ଗେ ଧାଙ୍ଗେ ଶୁଣିଲି ସତେ ଯେମିତି କିଏ ଯେପରିକି ଦାବି ରଖୁଥିବା ହସର ଶବ୍ଦ । ଅନାଇଲି, ଦେଖିଲି, ପାଖରେ

ଠିଆହୋଇ ରେଣୁକା ହସି ହସି ଫାଟିପଡ଼ୁଛି, ଆଗି ଛଳଛଳ ହୋଇ ଆସିଲାଣି ହସରେ ।

କହୁ ନାହିଁ, ଖାଲି ଖଣ୍ଡେ କାଗଜକୁ ବଳି ବଳି ଗୋଳଆ କରି ସେ ହାତରେ ଧରିଥାଏ । ତାକୁ ହିଁ ସେ ମୋ ଦେହରେ ବାରମ୍ବାର ଗେଞ୍ଜୁଥିଲା ପରା !

ଖପ୍‌କରି ଏକାମୁଠାରେ ତା'ର ଦୁ' ହାତକୁ ଧରି ପକାଇଲି । ସେତେବେଳଯାଏ ତା ହସ ସରି ନ ଥାଏ । କହିଲି, "ଏଥର ?"

କହିଲା, "ଓଃ, ଓଃ ମତେ ଛାଡ଼ିଦିଅ ବାଧୁଛି, ତମ ଗୋଡ଼ତଳେ ପଡ଼ୁଛି, ଏଁ, କେଡ଼େଯାଏଁ ଧରିଚ ମ ।"

ହାତ ଛାଡ଼ିଦେଲି । କହିଲା, "ହେଇ, ଦେଖିଲ, କେମିତି ଦାଗ ବସିଗଲା ।" କହିଲି, "କାହିଁ, କାହିଁ ।"

ବାଁ ହାତ ଟେକି ଧରିଲା, ଆସ୍ତେ ଧରି ପକାଇ ଫୁଙ୍କିଦେଲି ଆଉ ଆଉଁସିଲି, କହିଲି, ଏଥର ଭଲ ହୋଇଯିବ ।

ମୁଁ ଉଠି ବସିଥିଲି । ସେ ମୋ ପାଖକୁ ଘୁଞ୍ଚି ଆସିଥିଲା । କହିଲା, "ଆଉ ଲାଗିବ ନାହିଁ ତୁମ ସାଙ୍ଗରେ, କେଉଁଦିନ ପୁଣି ହାତଫାତ ଭାଙ୍ଗିଦେବ । ଇରେ ବାପରେ ।"

ମୁଁ ଏକଧ୍ୟାନରେ ତା'ର ହାତ ଆଉଁସୁଥିଲି ବସି ବସି । ହଠାତ୍ ଆର ହାତରେ ଗୁଡ଼ାଏ ନାଲି ରଙ୍ଗ ବୋଳିଦେଲା ମୋ ମୁଣ୍ଡରେ; ବାଁ ହାତଟି ଟଳି ପରି ଝାମ୍ପିନେଇ ଆଖିପିଛୁଡ଼ାକେ ମୁହଁରେ, ଗାଲରେ, ବେକରେ, ମୁଣ୍ଡରେ, ଦୁ' ହାତରେ ବୋଳି ଦେଇଗଲା ରଙ୍ଗ ।

ଉଠି ଗୋଡ଼େଇଗଲି । କହିଲା, "ଆସ ଆସ, ସମସ୍ତେ ଗ୍ଭହିଁ ବସିଛନ୍ତି ତୁମକୁ ତାସ ଖେଳିବାକୁ ।"

କେମିତି ଲାଗୁଥିଲା ମତେ ? ଭଲ ଲାଗୁଥିଲା, ସଙ୍କୋଚ ଥିଲେ ମନରେ ବିକାର ଆସିଥାନ୍ତା, ଲାଜ ମାଡ଼ିଥାନ୍ତା କେବେ କେବେ । କଳ୍ପନା ଜାଗି ଉଠୁଥାନ୍ତା । ମୁଁ କବିତା ଲେଖୁଥାନ୍ତି ।

କିନ୍ତୁ ସଙ୍କୋଚ ନ ଥିଲା । ଯେମିତି ବନ୍ଧୁବାନ୍ଧବଙ୍କ ମୋ'ର ଜଣା-ଶୁଣା, ସେମିତି ପରସ୍ପରଠି ଏକୁ ଆରେକର ଗୋଟାଏ ଟାଣ, ଗୋଟାଏ ଦାବି । ତା' ସାଙ୍ଗେ ଲାଗିବା ମୋ'ର ଗୋଟାଏ ଦାବି, ମୋ ସାଙ୍ଗେ ଲାଗିବା

ତା'ର ଗୋଟାଏ ଦାବି । ମୁଁ ତା'ର ଅଧା ସିଲେଇ ହୋଇଥିବା ରୁମାଲ ବାଜ୍ୟାପ୍ତ କରିବି ଓ ତା'ର ପଶମ ବଣ୍ଡଲ ଅଲଗା କରି ପକାଇବି; ସେ ମୋ'ର ପାନ ଭିତରେ ଜାଣି ଜାଣି ବେଶି ଚୂନ ଦେବ, ଫାଉଣ୍ଟେନ୍ ପେନ୍‌ର ସେଯାକ ନଗାଡ଼ି ପକେଇବ ଓ କାମିଜ ଲୁଚେଇ ଦେବ ।

ବେଶ୍, ଏତିକି !

ଏବେ ଏବେ ମତେ ଚମକେଇ ଦେଇ ସେ ପଚାରିବ, "ବରକୋଳି ଖାଇବ ବରକୋଳି ?" ଗଣ୍ଡାଏ ଛ'ଟା ଆଣି ଅଣ୍ଟିରେ ଅଜାଡ଼ି ଦେଇଯିବ । ଆଉ ଏବେ ଏବେ କହିବ, "ତୁମେ ଗଲେ ମୋ ପେଇଁ ଗୋଟାଏ ଭଲ ଫାଉଣ୍ଟେନ୍ ପେନ୍ ପଠେଇଦେବ, ମୋ କଲମରୁ ସେୟା ବୋହିଯାଉଛି । ଜାଣି ଥା—"

ମୁଁ ତା' କଥା କେବେ ଭାବିନାହିଁ ସେଠି ଥିବାଯାକ । ଜାଣି-ଶୁଣି କେବେ ଭାବି ବସିନାହିଁ, ସେ କପରି, କେମିତି ଅଥବା ମୋ ପ୍ରତି ତା'ର ସ୍ନେହ କେତେଦୂର । ମଝିରେ ହିଡ଼ ବାଡ଼ ନ ପଡ଼ିଲେ ସେ ସବୁ ଧାରଣା ଆସେ ନାହିଁ । ଡାକେ ସାଧୁଭାଇ, ସାଧୁଭାଇ, ମତେ ଭାରି ଭଲ ଲାଗେ, ମୋ'ର ଆପଣାର ସ୍ୱଗୋଷ୍ଠି ଭଉଣୀ ଏଇ ଗୋଟିକ ଜାଣି ମୋ ଚଳେ ।

କିନ୍ତୁ ଭାଇ ଆଉ ଭଉଣୀ ଏକାଠି ଖୁନ୍‌ସୁଟ୍ ହୁଅନ୍ତି ନାହିଁ କେବେ, କମ୍ଭା କେବେ ଜଣଙ୍କର ବ୍ୟକ୍ତିତ୍ୱର ଛାଇ ଆରଜଣଙ୍କୁ ପ୍ରକାଶ୍ୟରେ କବ୍ କବ୍ କରିଦିଏ ନାହିଁ, ଅଥବା ଜଣଙ୍କର ଅସ୍ତିତ୍ୱ ଆରଜଣଙ୍କୁ ଏତେ ପ୍ରବଳଭାବେ ଗୋଚର ହୁଏ ନାହିଁ ।

ତା' ସାଙ୍ଗେ ଲାଗିବାକୁ ଭଲ ଲାଗୁଥିଲା । ତା' ପାଖେ ବସି ଗପିବାକୁ ଭଲ ଲାଗୁଥିଲା । ତା' ଆଡ଼କୁ ଚାହିଁ ରହିଥିଲେ ସୁଦ୍ଧା ବେଳକରେ ରହା ପଶୁ ନ ଥିଲା । ତା'ର ଚୁଟି ଝିଙ୍କିବାକୁ ବା ହାତ ମୋଡ଼ିଦେବାକୁ ଭଲ ଲାଗୁଥିଲା । ସେଦିନ ମୋ ଆଖିରେ କ'ଣ ଗୋଟାଏ ପଡ଼ିଯାଇଥିଲା ଯେ ସେ ତା'ର କାନିଦସିକୁ ପାଟିରେ ଓଦା କରି ବଳି ମୋ'ର ମୁହଁ ଉପରେ ଝୁଙ୍କି ପଡ଼ି ଯେତେବେଳେ ମୋ ଆଖି ଆବିଷ୍କାର କରିବାକୁ ଚେଷ୍ଟା କରୁ-ଥିଲା, ସେତେବେଳେ ଭଲ ଲାଗୁଥିଲା । ସବୁ କଥା ତା'ର ମତେ ଭଲ

ଲାଗୁଥିଲା, ଆଜି ସେତେବେଳେ ମୁଁ ଭାବୁଥିଲି, କେଡ଼େ ସୁନା ଭଉଣୀଟିଏ ମୋ'ର !

ଆଜି ଭାବୁଥିଲି, ଆହା, ସୁଖରେ ଥାଉ ଇଏ, ଭଗବାନ୍ ତା'ର ମଙ୍ଗଳ କରନ୍ତୁ ।

ମତେ ଯାହା ଲାଗୁଥିଲା, ତାହାକୁ ମୁଁ ଭାବୁଥିଲି ଆମର ସ୍ନେହ । ମିଛ ଭାବୁ ନ ଥିଲି; ସ୍ନେହ ହିଁ ତ ସବୁ, କେବଳ ପ୍ରକାରଭେଦ । ସେତେବେଳେ ପ୍ରକାର ପ୍ରକାର ଭିତରେ ବାଡ଼ ମୋ ଆଖିରେ ଲୁହାବାଡ଼ ପରି ଦିଶୁଥିଲା, ଅନ୍ୟଥା ଭାବିଲେ ଆପଣା ମନ ଭିତରେ ମୋ'ର ସଂସ୍କୃତି ଠେଙ୍ଗା ଉଞ୍ଚାଇ ଠିଆହୁଏ । କେତେ ବଡ଼ ବଡ଼ ଆଦର୍ଶବାଦର ଧାରଣା ତାହା ପଛରେ ଠିଆ ।

ବର୍ତ୍ତମାନ ଭାବୁଛି, ଲୁହା ବୋଲି ମୋ'ର ଆପଣାର ମନ ହିଁ ତାହାକୁ ଧରି ନେଇଥିଲା । ସେଇ ସବୁ ପୋଥିଗତ ନ୍ୟାୟ ନୀତିର ଧାରଣା ଜୀବନ ସହିତ ସାମଞ୍ଜସ୍ୟ ତାହାର କେଉଁଠି ? ଏପ୍ରକାର ଆଉ ସେ ପ୍ରକାର, ଏହା ଭିତରେ ମିଶାମିଶି ଚାଲିଛି, ଘଟନାଚକ୍ରରେ ମଝିରେ କେତେ ନୂଆ ନୂଆ ବାଡ଼ ପଡ଼ି ନୂଆ ନୂଆ 'ପ୍ରକାର' ତିଆରି ହେଉଛି । ଉପରେ ଉପରେ ଆଖି ପ୍ରକାର ପ୍ରକାରକୁ ହିଁ ଦେଖିଥାଏ, ଏଠି ସୋରିଷ କ୍ଷେତ, ସେଠି ଧୂଆଁ ପତ୍ର; କିନ୍ତୁ ତଳର ମାଟିକୁ ଭୁଲିଯାଏ ।

ମୋ'ର ଛୁଟି ସରିଆସିଲା । ଘରୁ ବାପା ଚିଠି ଲେଖିଲେ ସେ ଛୁଟି ଗୋଟାକ ଆଡ଼ା ଦେଇ ଦେଇ କଟେଇ ଦେବ ନା ଘରକୁ ଯାଇ ଦଣ୍ଡେ ଓଳିଏ ରହିବ ? ବାଧ୍ୟ ହୋଇ ବାଟୋଇ ଗଣ୍ଠିରି ବାନ୍ଧି ବସିଲି ।

ଢଂ, ମାଣ୍ଡେଇ ମାଣ୍ଡେଇ ଦଶ ଘଣ୍ଟା ବାଜିଗଲା । ବଦାବନ୍ଦ ଦଣ୍ଡବତ ସାରି ବାହାରି ପଡ଼ିବାକୁ ଉଠିଲି ।

ଘଣ୍ଟାଏ ହେଲା ଟୋକିଟାର ଦେଖା ନାହିଁ । ଯାଇ ଦେଖେଁ ତ ଖଟ ଉପରେ ଚାଦରଟାଏ ଘୋଡ଼ିହୋଇ ସେ ଶୋଇଛି ।

ଡାକ ଡାକ ଶୁଣିଲା ନାହିଁ ? ଭାଉଜ ବିରକ୍ତ ହୋଇ ଚାଲିଗଲେ । ଥରେ ଥରେ ତା ପାଖରେ ଯାଇ ପହଞ୍ଚି ଆସ୍ତେ ଆସ୍ତେ ହଲେଇଲି, ନାଁ ଧରି ଡାକିଲି । ହଲାହଲା କରିବାରୁ ମୁହଁ ବାହାର ନ କରି ସେହିପରି ଶୋଇରହି ସେ କହିଲା, "ଉଁଃ କହୁଚି ମୁଣ୍ଡ ବଥାଉଚି ବୋଲି ।"

ସ୍ୱଦର ଭିତରେ ହାତ ଗଳାଇ କପାଳ ଉପରେ ରଖିଲି, କହିଲି, "କାହିଁ, ତାତ୍ପାତ ତ କିଛି ନାହିଁ, ଖାଲି— ।"

ମୁହଁ ଖୋଲିଦେଲି । ଧୀରେ ଧୀରେ ପୁଣି ଟାଣିଦେଲା ଆଖି ନ ଖୋଲି । ମୁହଁ ନାଲି ଦିଶୁଥାଏ, ନାକ ଫଣ ଫଣ ଦିଶୁଥାଏ । ବାଳ ଅଲଗା ହୋଇ ପଡ଼ିଥାଏ । ମେଞ୍ଚାଏ ଅଉଁଆ ହୋଇ ଲାଗିଥାଏ କାନ ମାଙ୍କୋଡ଼ରେ ।

"ରେଣୁ—"

"କହିଲି ମୁଣ୍ଡ ବଥାଉଛି ବୋଲି, କାହିଁକି ପୁଣି ଲାଗୁଚ ଭଲା । ତୁମେ ଗଲ—।"

ରେଣୁକା କାନ୍ଦୁଥିଲା ।

ମନଟା ଫିକା ପଡ଼ଯାଇଥାଏ ବାଟଯାକ ।

କ'ଣ ସେପରି ଛାଡ଼ିଦେଇ ଅଇଲି ତାଙ୍କ ଘରେ, ଯହିଁ ପାଇଁ ଛାତି ରହି ରହି କରତ ହେଉଛି । ଉଦାସ ଲାଗିଲା । ବନ୍ଧ ରାସ୍ତାଟା ଷ୍ଟେସନ ପର୍ଯ୍ୟନ୍ତ କେତେ ଦୂର ! ସବୁ ଚୂପ ଚୁପ୍, ତୁମାତାକ ।

ଓାହାଣ ପାଖେ ନଈବାଲି ଖାଲି ଖାଁ ଖାଁ ଗୋଡ଼ାଉଥାଏ, ସେପାଖେ ନଈ, କେଡ଼େ ମଉନ ।

ଗୋରୁପଲ କଣ୍ଡିଆ ଉପରେ ଧୂଳି ଉଡ଼ାଇ ଗାଁକୁ ଗଡ଼ିଲେ, ନୂଆବୋହୂଏ ପାଣିକି ଗଡ଼ିଲେ, ସଞ୍ଜ ହେଲା । ଚଢ଼େଇ ଫେରିଲେ । ସ୍ୱରଆଡ଼େ କେବଳ ଘରବାହୁଡ଼ା ନଶା ।

ମୋ'ର ପଢେଇ ଘର କେଉଁଠି ନାହିଁ, ଉପରେ ସଞ୍ଜୁଆ ଆକାଶ ତଳେ ମୁଁ । କେତେ ଟାଂଗଣ୍ଡା, ବାଡ଼ିଘର । କିନ୍ତୁ କେଉଁଠି ବୋଲି ମୋର କିଛି ନାହିଁ । କେହି କିଛି ନୁହେଁ ମୋର । "ଆହା—ସୁନା ଭଉଣୀଟି— ରେଣୁ !"

ପୁଣି କଲେଜ ଖୋଲିଲା, ପୁଣି ପାଠ ପଢ଼ା, ପରୀକ୍ଷା ଉପରୁ ପରୀକ୍ଷା ।

ସକାଳ ହୁଏ, ଘଣ୍ଟା ବାଜେ, ସବୁ ଶୂନ୍‌ଶାନ୍‌ ପଡ଼ିଆସେ, ମୁଁ ପାଠପଢ଼େ । ଘଣ୍ଟା ବାଜେ, ମୁଁ ଖାଇବାକୁ ଯାଏ । ଘଣ୍ଟା ବାଜେ, କ୍ଲାସରେ ଯାଇ ବସେ ।

ଦିନସାରା ଖାଲି ଘଣ୍ଟା ହିଁ ବାଜୁଛି, ଆଉ କିଛି ।

ପଚାଶଟା ପଚାଶଟା ହୋଇ ଦିନଗୁଡ଼ାକ ସରିଆସେ । ଛୁଟି ଦିନଗୁଡ଼ାକ ମଧ୍ୟ କଟିଯାଏ, କିଛି ଆଉ ବନ୍ଧୁ, ବନ୍ଧୁ ଆଉ କିଛି କରି ।

କେତେ ନୂଆ ନୂଆ କଥା ମୋର ମନକୁ ଆଚ୍ଛନ୍ନ କରି ରଖେ— କ୍ଲାସ, ବନ୍ଧୁ, ହଷ୍ଟେଲ୍‌ କଥା, କଲେଜ କଥା, ଦେଶ ମିଶ୍ରଣ କଥା, ଦେଶ ବିଦେଶ କଥା ଏବଂ ମୋ ନିଜ କଥା ।

ମୋ ନିଜ ଭବିଷ୍ୟତ୍ । ବାପା ବେଶି ବେଶି କରଜ କରି ପକାଉଛନ୍ତି । ବୋଉକୁ ଜର ଛାଡ଼ୁନାହିଁ, ମନେ ହେଉଛି ଖାଲି ବିଛଣାରେ ପଡ଼ି ପଡ଼ି । ଛୁଟିଦିନ ହେଲେ ଧାଇଁଯାଏ ।

ମୁଁ ଖାଲି ସ୍ୱପ୍ନ ଦେଖେଁ ନାହିଁ, ଭାବେଁ, ଭାବି ଭାବି ଥଳକୂଳ ପାଏନାହିଁ ।

ଏତେ ଭାବନା ଭିତରେ କେଉଁଠି ଥାଏ ସେ ? ଥରେ ଅଧେ ସଞ୍ଜପହରରେ ଏକୁଟିଆ ଥିଲାବେଳେ ମୁଁ ତାକୁ ଦେଖିଛି—ମୋ'ର କଳ୍ପନା ଭିତରେ—କେବେ କେବେ ମନେ ପଡ଼େ ନାହିଁ, ନୂଆ ଲୋକେ ମୋ'ର ଆଖି ଝଲସାଇ ଚନ୍ଦ୍ରାକୁ ବାନ୍ଧି ନେଇଛନ୍ତି ।

ଯେତେଥର ମୁଁ ତାକୁ ଭାବିଛି; ଭାବିଛି ସୁନା ଭଉଣୀଟି ସେଥିର କଥା ମନରେ ଗୁନ୍ଥି ମନକୁ ଖୁସି କରିଛି । ପୁଣି ସ୍ୱପ୍ନ ଭିତରେ ଚନ୍ଦ୍ରା ଆସି ପଶିଛି, କଳ୍ପନାର ପରିସର ଗଢ଼ି ହୋଇଛି ଆପେ ଆପେ ।

ନୂଆ ଛବି—ମଞ୍ଜୁଳିକାର ଆଖିଯୋଡ଼ିକ । କ୍ଲାସରେ ପାଠ ଯେତେବେଳେ ମରୁଭୂମିର ତତଲା ପବନ ପରି ଶୁଖିଲା ଠାଆଁସିଆ ଝୋଲମରା ହୋଇଆସେ, ଯେତେବେଳେ ଶାନ୍ତ ଦିଏ ସେହି ମଣିରକା, ମଞ୍ଜୁଳିକାର ଭଅଁର ଚଢ଼ା—କୁନ୍ଦ ଫୁଲ ପରି ଆଖିଯୋଡ଼ିକ, ସଜଦୁହାଁ ଦୁଧ ପରି ସୁନ୍ଦର ।

ମଞ୍ଜୁଳିକା ଭାରି ସୁନ୍ଦର । ସେ ଆମ କ୍ଲାସରେ ପଢ଼େ ।

ସୂର୍ଯ୍ୟମୁଖୀ ଫୁଲ ପରି କ୍ଲାସ ଗୋଟାକ ତାହାରି ଆଡ଼କୁ ମୋହିଁ-ବସେଁ । କେବେ କେବେ ପିଲାଏ ନିଜ ଭିତରେ ଖୁଜୁବୁଜୁ ହୁଅନ୍ତି, ଖାଲି ନିଜେ ପଦାକୁ ଫୁଟିବା ଆଶାରେ । ପ୍ରଫେସରଙ୍କୁ ଏଣ୍ଡୁତେଣ୍ଡୁ ପ୍ରଶ୍ନ ପଚାରନ୍ତି । ହସ ଉଠାନ୍ତି । କେହି ପ୍ରଫେସର ପିଠି ଆଡେଇଲେ ମେଣ୍ଢା ପରି ବୋବେଇ ଉଠନ୍ତି । କେହି ବା ରୁମାଲଟା ଗୁଡ଼ା ପକେଟରୁ ଝୁଲାଇ ପକାନ୍ତି । କେହି ବା ପାଣ୍ଡିତ୍ୟ ଦେଖାନ୍ତି; ସବୁ ତାହାରି ଉଦ୍ଦେଶ୍ୟରେ, ସେ ଯେପରି ଚାହିଁବ । କିନ୍ତୁ ସେ ମୁଣ୍ଡ ବୁଲାଏ ନାହିଁ, ଡୋଳା ବୁଲାଏ । କଥା କହେ ନାହିଁ, ଓଠ ଚୁପି ଚୁପି ହସେ । ବେଶି ହସ ମାଡ଼ିଲେ ମୁହଁରେ ଲୁଗା ମାଡ଼େ । ଲାଜ ମାଡ଼ିଲେ ମୁହଁ ନାଲି କରି ବହି ଉପରେ ଓହଳାଇ ପକାଏ ।

ଘରେ ନିଭୃତ ମୁହୂର୍ତ୍ତରେ ତାହା କଥା ଭାବିଲେ ଖୁସି ଲାଗେ । ଯେଉଁ ସାହିତ୍ୟ ଆମେ ପଢ଼ୁଥିଲୁ ଇଂରାଜୀ, ଓଡ଼ିଆ ଆଉ ସଂସ୍କୃତ, ସବୁ ଆମରି ସ୍ୱପ୍ନ ପାଇଁ ଭାଷା ଯୋଗାଉଥିଲା ।

ଓଦା ଫୁଲ ଧରି ଠାକୁରଙ୍କୁ ଦେଲେ ହାତରେ ମଧ୍ୟ ଓଦା ଲାଗେ, ବାସ୍ନା ଲାଗେ ।

କିନ୍ତୁ ସବୁ ଗୋଳମାଳ ହୋଇ ମିଶିଯାଏ । କେତେ ସ୍ମୃତି । ସାନ ବଡ଼ କେତେ ଲହଡ଼ି ପିଟିହୋଇ ସୁଲୁସୁଲିଆ ଦକ୍ଷିଣା ପବନରେ ନଈ ପରି ମନ ଭିତରେ ଚବର ଚବର କରିଉଠେ । ମୁଁ ବେଳେ ବେଳେ ବାଉଳା ହୋଇ ସେହି ଚବର ଚବର ଶୁଣେ, କେଉଁ ଲହଡ଼ିରୁ ଛିଟିକାଏ ବା କେତେବେଳେ ଦେଖେଁ, ଯେ ମୋ'ର ଅତି କଡ଼ରେ ।

ସବୁ ଦେଖିପାରେ ନାହିଁ ।

କ'ଣ କେତେବେଳେ ମନେପଡ଼େ ସ୍ୱପ୍ନରେ ।

ପୁଣି କଳ୍ପନା ଆଉ ଚିନ୍ତା ଏକାଠି ଗୋଟେଇପୋଟେଇ ହୋଇ-ଯାଏ ।

ଦୁଇଟା ବର୍ଷ କଟିଗଲା । ଖବରକାଗଜରେ ଘରେ ଅଟକ ରହିଗଲି ।

ତାହାପରେ ପୁଣି ପଢ଼ା ।

ରେଣୁକା ତା'ର ସିଲେଇ ଓ ତା'ର କାମଦାମ ନେଇ ଘରେ ହିଁ ରହିଲା । ଏ ଦୁଇ ବର୍ଷ ଭିତରେ କେବଳ ଦୁଇଖଣ୍ଡ ଚିଠି ତା'ଠାରୁ ପାଇଛି ଓ ଦୁଇଖଣ୍ଡ ଚିଠି ତାହା ପାଖକୁ ଲେଖିଛି । ଥରେ ଲେଖିଥିଲା— "ତୁମେ—ଲେଖିଥିଲ ଆସିବ ବୋଲି ଯେ ବୋଝ ଗୋଡ଼ ତଳେ ପଡ଼ୁ ନ ଥିଲା । ଆସିଲ ତ ନାହିଁ, ଅନେଇଁ ଅନେଇଁ ଆଖିରୁ ପାଣି ମଲା । ବରକୋଳି ଝଡ଼ି ଗଲା । ଆଉ କ'ଣ ଆମ୍ବକସି ଝଡ଼ିଲେ ଆସିବ ?"

ଆଉ ଥରେ ଲେଖିଥିଲା—"ଓହୋ, ସ୍ୱଳ୍ପ ମାସ ପରେ ଖଣ୍ଡେ ଚିଠି ! ମନେ ପଡ଼ିଲା କି ?

କାହିଁକି ଆମ୍ଭକୁ ପସ୍ତରବ ? ତୁମେ କାହିଁ କଲେଜପଢ଼ୁଆ ବାବୁ, କାହିଁ ଆମେ ମଫସଲି !

ଲେଖିଥିଲ ମନ ଭଲ ନାହିଁ, ଏ କେମିତି ଆଚମ୍ବିତ କଥା ! ଥିଏଟର, ସରକସ୍ ଆଉ ନୂଆ ଲୋକଙ୍କୁ ଦେଖି ମନ ଖରାପ ହେଉଛି ପରା ! ଆମ ଏଠି ସମସ୍ତଙ୍କୁ ଜର । ମୋ କାନ ପାଚିଛି । କ'ଣ ଔଷଧ ଜାଣିଥିଲେ ଲେଖିବ ।"

ତା'ର ଚିଠି ପଢ଼ିଲେ ପୁଣି ମୋ'ର ସବୁ ମନେପଡ଼େ । ମନ ହୁଏ ପୁଣି ସ୍କୁଲପାଏଁ ଚିକିଏ । ଯାଇ ପାରେଁନାହିଁ, ଗୋଡ଼ ଛନ୍ଦି ହୋଇଯାଏ ଘଟନାଚକ୍ରରେ । କାମ ଶେଷରେ ପୁଣି ତା'ର ଚିଠି ପଢ଼େଁ । କ'ଣ ଗୁଡ଼ାଏ ଲେଖିଛି ପାଗଳୀ ଭଉଣୀଟା । ଝଟମ ଭଉଣୀ ଫଉଣୀ ଧାରଣା ମନରୁ ଉଡ଼ିଯାଏ । ଦେଖେଁ, ଆଖି ଆଗରେ ତାକୁ ରଖି ମୁଁ ମନେ ମନେ ସୁଖ ପାଉଛି । ଦେହ ଶିରଶିରେଇ ଆସୁଛି । ପୁଣି କେଉଁ ଅଜଣା ଅଚିହ୍ନା ପ୍ରବଣ ମନ ଭିତରେ ସଙ୍ଗିନ୍ ଉଠାଇ ଠିଆହୁଏ, ଆଉ ପୁଣି ଭାବେଁ, "ସୁନା ଭଉଣୀଟି !" ସତେକି ମନକୁ ମନ ମୁଁ କହିଉଠିଛି, "ଆରେ !—"

ଭାଉଜ ଚିଠି ଲେଖନ୍ତି ବିଦେଶରୁ —

"ଏଠି ଗପବନ୍ଧୁ ଜମା ମିଳୁ ନାହିଁ । ବେଳ କଟୁ ନାହିଁ । କେବେ ଆସିବ, ଲେଖିଲେ ଷ୍ଟେସନକୁ ଗାଡ଼ି ଯିବ । ମୋ'ର ପ୍ରାଣଭରା ଆଶିଷ ନେବ । ଇତି ।

ତୁମର ଭାଉଜ —"

ପୁଣି କେବେ କେବେ—

"ମନ ଭଲ ନାହିଁ। ମୁଣ୍ଡ ବଥୋଉଛି। ତୁମେ ବୋଧହୁଏ ଘର କାମକାର୍ଯ୍ୟରେ ବ୍ୟସ୍ତ ଅଛ। ଯାଉଛୁ ଟେଷ୍ଟ ଦେଇବାସ କରିବ। କେତେ ଧନ୍ଦା। ଅକ୍ଷରଗୁଡ଼ାକ ଖରାପ ହୋଇଗଲା ତରବରରେ। କ'ଣ କରିବ!

। ଇତି।

ତୁମର ଅଭାଗିନୀ ଭଉଣୀ—"

ମୋ'ର କଣିକଥା କୋଠରୀରେ—ସେତେବେଳେକୁ ମୁଁ କଣିକଥା କୋଠରୀ ପାଇଲିଣି—ଶୋଇ ଶୋଇ ମୁଁ ଅନୁଭୂତିରେ ଡୁବି ଯାଏ ଆଉ ଉଠେଁ ନାହିଁ। ଭଉଣୀବୋଉଙ୍କ ମୁଣ୍ଡ ଚିପିଦିଏ, ତାଙ୍କ କୋଳରେ ମୁଣ୍ଡ ରଖି ଶୋଇପଡ଼େଁ। ରେଣୁ ଯାଙ୍କେ ଗୋଡ଼ଆଗୋଡ଼ ଖେଳେଁ, ସେ ଧାଏଁ ମୁଁ ଗୋଡ଼ାଏଁ। ବେଳେ ବେଳେ ହଠାତ୍ ମଞ୍ଜୁଳିକାର ଆଖିଯୋଡ଼ିକ, ସେ ଯେପରି ମୁହଁ ନୁଆଁଇ ଡାକିବା ବୁଲୁଛନ୍ତି, ଏପାଖ ସେପାଖ।

ମଞ୍ଜୁଳିକା ସମ୍ବନ୍ଧ ଯେତେ ଚମକାଇ ହଏନାହିଁ, ସେ ଯେପରି ବାଲିସାହି ସେପାଖର ନଈ, ବାଲି ବି ଅଛି, ନଈ ବି ଅଛି, ସବୁହିନେ।

ଯଦି ହଠାତ୍ ହଠାତ୍ କ୍ଲାସକୁ ସେ ନ ଆସେ, ପଢ଼ା ନୀରସ ହୋଇ-ଯାଏ। ପାଣି ପିଇ ଯିବାକୁ ମନ ହୁଏ।

ସେ ନ ଆସିଲେ ଅନ୍ୟ ପିଲାଏ ଧକ୍କାଧକ ଠେଲାଠେଲି ହୋଇ ତା' ସିଟ୍‌ରେ ବସନ୍ତି, ତହିଁରୁ ସୁଖ ପାଆନ୍ତି, କ'ଣ ଚେତନ ଯେପରି ଲାଗିରହିଛି ସେ ଅଚେତନ କାଠରେ। ମୁଁ ବ୍ୟଗ୍ର ହୁଏନାହିଁ, କିନ୍ତୁ ଖରାପ ଲାଗେ। ଗମ୍ଭୀର ଲାଗେ।

ନିତି ଦେଖା, କିନ୍ତୁ ପରିଚୟ ପାଇଁ କାହାର ଗରଜ ପଡ଼େ ନାହିଁ। ଥରେ ଯାଇଥିଲି ଖୁନ୍ଦା ମାଗି। ପଦେ ଦି'ପଦ କଥାଭାଷା କ'ଣ ହୋଇଥିଲା। ଫେରିଆସି ନ ପହଞ୍ଚୁଣୁ ବନ୍ଧୁମାନେ ମତେ ଆକ୍ରମଣ କଲେ, ଯେପରି ଘର ଗୋଟାଏ ବଡ଼ ମହାଜନ ହୋଇଛି ମୁଁ, ଆଉ ସେମାନେ ଡକାଇତ। ମନେମନେ ଅନୁତାପ କଲି, କାହିଁକି ମୁଁ ଗଲି।

ଖୁବ୍ ବେଶି ନିରୋଳା ଲାଗିଲେ କେବେ କେମିତି ମଞ୍ଜୁ କଥା ଭାବେଁ, କିନ୍ତୁ ଦେଖିଛି, ଯଦି କେଉଁଠି ବନ୍ଧୁମାନେ ତା' ନାଁରେ ଧାଡ଼ି ପାଞ୍ଚ

କହି ଉପହାସ କରୁଛନ୍ତି, ଶୁଣିବାକୁ ମତେ ଭଲ ଲାଗୁଛି, ମନ ଭିତରେ କୌତୂହଳ ହୋଇଛି—ଆଜି କିଛି ପଢ଼ନ୍ତା କି, ଆଜି କିଛି !

ଏଇ ମଞ୍ଜୁଳିକା କଥା ଏତେ ଲୋକ ଜଣେ ଭାବୁଥିଲେ । ହରେଣ୍ କବିତା ଲେଖୁଥିଲା, ସତ୍ୟ ଜୋରମାନା ଦେଇଥିଲା, ତା'ର ଗାଡ଼ି ପଛେ ପଛେ ଉଡ଼ୁଥିବା ଧୂଳିରେ ଥରେ ଥରେ ସାଇକେଲ ଚଲାଉ ଚଲାଉ ଉଦ୍ଧ ମଟରଗାଡ଼ିରେ ଧକ୍କା ଲଗେଇ ଗୋଟିଏ ବର୍ଷ ଲୋକସାଣ କରିଥିଲା ।

ଆଜି ସେମାନେ କାହାନ୍ତି ? କାହିଁ ବା ମଞ୍ଜୁଳିକା ? ହରେଣ୍‌ର କବିତାକୁ ତା'ର ନାତି ଡଙ୍ଗା କରି ଭସାଇ ଦେବଣି । ସତ୍ୟର ନଖ ଓ ଦାନ୍ତ ମୁଣ୍ଡା ହୋଇଯିବଣି ।

ସେମାନେ ଦୁଃଖ ପାଇଥିଲେ । ମୁଁ ସ୍ମୃତି ହିଁ ପାଇଥିଲି, ଯେଉଁ ସ୍ମୃତି ଆପଣା ସୁଖେ କେବେ ତେଜ ହୁଏ, କେବେ କମିଯାଏ, କିନ୍ତୁ ନିଭି ନ ଥାଏ, ଦେହଟା ଶୀତଳ ହେବା ପର୍ଯ୍ୟନ୍ତ ।

ଆଇ.ଏ. ସରିଲି । ଦିନାକେତେ ହୁମ୍‌ହୁମ୍‌ରେ କଟିଲା । ଠିକ୍ ଏତିକିବେଳକୁ ବାପା ପେନ୍‌ସନ୍ ନେଇ ଘରକୁ ଆସିଲେ ।

ଆମର ଅବସ୍ଥା ଖରାପ ହୋଇଯାଇଥାଏ । କରଜ ଛିଣ୍ଡି ନାହିଁ ।

ମତେ କହିଲେ, "ମୁକ୍ତିଆର ପଢ଼, ନୋହିଲେ କେଉଁଠି ଖଣ୍ଡେ ଚାକିରିବାକିରି ଦେଖ୍ । ମୁଁ ଆଉ ପାରିବି ନାହିଁ ।"

ବୋଉ କହିଲା, "ମୋ ଦେହ ବି ଭଲ ରହୁ ନାହିଁ । ବୋହୂଟିଏ ଆସୁ ଘରକୁ ନଦା କରିବ ।"

କାହିଁ କେତେ ବଡ଼ ବଡ଼ ଆଶା ସବୁ ଚୂନା ହୋଇଯିବାକୁ ବସିଲା । ଭାବିଲି, ଯା' ପରେ—? ବିଭା ବା ବନ୍ଦ ହୋଇପାରେ, କିନ୍ତୁ ପଢ଼ା ଚଳାଇବି କେମିତି ? ବାପା ବୋଉଙ୍କୁ ଅନାଇ ମନ ଭିତର ମନ୍ଥର ହୋଇ ଆସୁଥିଲା ସତ, କିନ୍ତୁ ପଢ଼ାକୁ ମୁଁ ଏକଦମ୍ ଝିଖଡ଼୍, ନା, ପଢ଼ା ବନ୍ଦ ହୋଇ ନ ପାରେ ।

କିନ୍ତୁ ପଛରେ ଯାହା ଆସୁଛି, ଏ ଯେପରି ତାହାର ପହିଲି ଧକ୍କା, ଏହିପରି ଆଶଙ୍କାରେ ମନ ପୂରିଯାଏ ।

ଆଜି ବାହା ହେବା କଥା—ବୋଉ ବା ଆଉ କେହି ସେପରି କଥା ଉଠାଇଲେ ହସି ହସି ମୁଁ କଥା ଉଡ଼ାଇ ଦିଏଁ । ଅଥଚ ନିରୋଳାରେ ମନ ଭିତରେ ମୁଁ ସେହି କଥା ଭାବେଁ । ମୋ'ର ନିଜର ମତାମତ ତଉଲେଁ, ପୂର୍ବେ କେବେ ଭାବ ନ ଥିଲି । ପ୍ରସଙ୍ଗରେ କଥାଟା ଉଠିଲାରୁ ଏଇ ନୂଆ କରି ଭାବିଲି, ଭାବ ଦେଖିଲି ବାସ୍ତବରେ ଆଉ ମୋ'ର ଭବିଷ୍ୟତର ସ୍ୱପ୍ନ ଯେପରି ଏକାଠି ମିଶିମାଶି ଯାଉଛି, ମୋ'ର କବିତାମୟ ଧ୍ୟାନ ଓ ମୋ'ର ଆଦର୍ଶ, ମୋ'ର ଉଚ୍ଚ ଆଶା ଓ ମୋ'ର ଉନ୍ନତି, ସବୁ ତହିଁରେ ଆପଣାର ରଙ୍ଗ ଅଜାଡ଼ି ଦେଉଛି, ଯହିଁରେ ସେ ଧାରଣାଟା ପାଲଟିଛି ଗୋଟାଏ ବଡ଼ ଅବାସ୍ତବ ସ୍ୱପ୍ନ । ଅନୁଭୂତିରେ ବୁଝିଛି, ସେ ମୋ'ର ପ୍ରତ୍ୟେକ ପ୍ରବୃତ୍ତି, ପ୍ରତ୍ୟେକ ଇଚ୍ଛାକୁ ପୂର୍ଣ୍ଣ କରୁଛି, କିନ୍ତୁ କ'ଣ ସେ ପ୍ରବୃତ୍ତି, କ'ଣ ସେ ଇଚ୍ଛା ମୁଁ ତାକୁ ଆଖି ଆଗରେ ରୂପ ଦେଇପାରୁ ନାହିଁ । ମୁଁ ଦେଖିପାରୁ ନାହିଁ, କ'ଣ ମୋ ସ୍ୱପ୍ନର ଆକୃତି, ସୀମା ବା ସୌନ୍ଦର୍ଯ୍ୟର ପରିସର ।

ଏତେଗୁଡ଼ାଏ ଚିନ୍ତା, ନିଜ ଦେନ ଓ ବାହାର ଦେନ । ଚିନ୍ତା ଯୋଗୁଁ ଏତେଗୁଡ଼ାଏ ଦାୟିତ୍ୱବୋଧ । ତେଣୁ ସେଥର ବଡ଼ ଛୁଟି ଭିତରେ ମୋ'ର ମନ ଫୁଲ ଆଉ ଆକାଶକୁ ଦେନ ମାତି ଉଠି ନ ଥିଲା । ଅପ୍ରିୟତା କରିବାକୁ ହୋଇଛି । ସ୍ଥିର ଉପାୟ ଚେଷ୍ଟା କରିବାକୁ ହୋଇଛି, ସାତପାଞ୍ଚ ଭାବିଛି । ଆଶଙ୍କା ଉପୁଜିଛି । କେବେ ବା ଫାଙ୍କା ମନରେ ଦୂରକୁ ଚାହିଁ ଦେଖିଛି କାଳିଦେଉଳ ଆପେ ଆପେ ଖସି ପଡ଼ୁଛି ।

ଯାହାହେଉ, ଭଲ ପାଶ୍ ଟାଏ ହୋଇଗଲା ।

ବାପାଙ୍କୁ ପଚାରି, ବୋଉଙ୍କୁ ଭୁଲେଇ ପୁଣି ଯାଇ ହଷ୍ଟେଲ୍‌ରେ ରହିଲି । ବି.ଏ. ପଢ଼ିଲି । ଗୋଟାଏ କାମ—କ୍ଲାସକୁ ଯିବା, ଗୋଟାଏ ଧ୍ୟାନ—ପଢ଼ା, ଗୋଟାଏ ଚେତନା—ପରୀକ୍ଷା । ଆଉ ବାକି ସବୁ ସହଜ । ତେଣୁ ବାହାରର ତୋଫାନ ଓ ଅଭାବ ଦୁର୍ଗତି ପଦାରେ ପଦାରେ ଧାଇଁ ଧାଇଁ ହେଲା ।

ମୁଁ ନିଚ୍ଛନିଆ କାମ ସୁରୁଖୁରୁରେ କରିଗଲି, କିନ୍ତୁ ମନ ପରିଷ୍କାର ରଖିପାରିଲି ନାହିଁ । ସବୁ ସ୍ୱପ୍ନ ସବୁ କଳ୍ପନା ଭିତରେ ଲୁହାଇ ଲୁହାଇ ସେଇ ପ୍ରଶ୍ନ ଜାଗିଉଠେ—କ'ଣ କରିବ ?

ଯା' ପରେ କ'ଣ ?

ମୁଁ ବର୍ତ୍ତମାନ ବଡ଼ ହେଲିଣି; ଭିତରେ ଭିତରେ ଓଜନ ଓଜନ ଲାଗୁଛି; କିନ୍ତୁ ମନର ଗୋଟାଏ ପାଖ ଅଛି, ଯାହା ହାଲୁକା ରହିଛି ।

ସବୁ ଭାବନା ଉପରେ ଉଚ୍ଛୁରିପଡ଼େ ଯୌବନର ସ୍ୱପ୍ନ ।

ମଞ୍ଜୁ କଲିକତାକୁ ଚାଲିଗଲା । ଆହୁରି କେତେ ଆସିଲେ । ସେମାନଙ୍କ ମୁହଁ ସବୁ ଆଜି ହଜିଯାଉଛି ସ୍ୱପନ ପରି । ସେତେବେଳେ ସେମାନେ ଥିଲେ ଜୀବନ୍ତ ବର୍ତ୍ତମାନ ।

ସାଙ୍ଗମେଳରେ ସ୍ତ୍ରୀଜାତି ସମ୍ବନ୍ଧ ସମ୍ପର୍କର ଅଭାବ ଅନେକ ଅଂଶରେ ଭୁଲି ହେଉଥିଲି ସତ, କିନ୍ତୁ ସେ ଅଭାବର ସ୍ୱରୂପ ବିଶେଷଭାବେ ନିଜ ଭିତରେ ଆଖିରେ ପଡ଼ୁଥିଲା । ଫଳରେ ଅଧୀରତା ଆସୁଥିଲା ଓ ସେଇ ଅଧୀରତାକୁ ଦଶବାଟରେ ଖେଳାଇ ଦେବାକୁ ହେଉଥିଲା । ରାତି ରାତି ଉଜାଗର ରହି ପାଠ ମୁଖସ୍ଥ କରିବାବେଳେ କଠିନ ସମସ୍ୟା କଥା ଭାବିଲାବେଳେ ସେଭଳି ଅଧୀରତା ଆସେ ନାହିଁ ।

କିନ୍ତୁ ଯେତେବେଳେ ଲୁଚି ରଖିବା ଚିନ୍ତା ନ ଥାଏ ଓ ନିରୋଳାରେ ହୁଗୁଳା ମନ ଏ କଢ ସେ କଢ ଉଙ୍କି ମାରୁଥାଏ, ସେତେବେଳେ ମନକୁ ଛୁଇ ପକାଏ ଗୋଟାଏ ନିଃସଙ୍ଗ ନୀରବତା ଓ କ୍ଷୀଣ ବିଷାଦର ରଶ୍ମି ଭିତରେ ଏଇ ଅଧୀରତା ପ୍ରକଟି ଉଠେ—।

ବକୁଳବନ ନିଶବ୍ଦ । ଚମ୍ପାକଢ଼ୀ ପରି ଆଙ୍ଗୁଠି କାଢ଼ି ଜହ୍ନ ଆଲୁଅ ଝିମିଆକରା ନିଚ୍ଛଟିଆ ରାସ୍ତାରେ ଇଙ୍ଗିତ ଦେଖାଇ ପଦାକୁ ଡାକୁଥାଏ । ବଗିଚାର ବଡ଼ ସ୍ଲେଟ ଗଛ ନୀରବରେ କ'ଣ ରହସ୍ୟ ଯେପରି ଭାବୁଥାନ୍ତି । ନିଜକୁ କେଜାଣି ନିଜେ ହିଁ ବ୍ୟସ୍ତ ହୁଏ ।

କ'ଣ ମୁଁ ଲୋଡ଼େଁ ଜାଣେ ନାହିଁ, କିନ୍ତୁ କ'ଣ ଯେପରି ମୁଁ ଖୋଜେଁ, କ'ଣ ଯେପରି—।

ଶୋଇ ଶୋଇ ନିଦ ହୁଏନାହିଁ । ପିଲାଦିନର ଖିଆଲ ମନେ ପଡ଼ଯାଏ, ଏକଠୁଁ ଶହେ ଯାକେ ଗଣେଁ—ଏକ୍—ଦୁଇ—ତିନ—ଚାରି······।

ପୁଣି ପ୍ରଜାପ୍ରିତି ହେଲି । ଘରକୁ ଆସି ଏଠି ଦିନେ ସେଠି ଦୁଇଦିନ ହୋଇ ଗାଁରେ ପହଞ୍ଚିଗଲି ।

ଠିକ୍ ଗଲାବେଳକୁ କେମିତି ଗୋଟାଏ ଲାଗୁଥାଏ, ସେପରିକି ଗୋଟାଏ କିଛି ଘଟିବ । ମେଘ ଘୋଡ଼ାଇଥିବା ପବନ ଥମ୍ବି ଯାଇଥିବା ବେଳ ପରି ରହସ୍ୟମୟତା, କିନ୍ତୁ ପହଞ୍ଚି ଗଲାପରେ ମନରୁ ସେପରି ଭାବ ଉଭେଇଗଲା । ଭଲମନ୍ଦ ପଡ଼ିଲି, ସୁଖଦୁଃଖ କଥା ପଡ଼ିଲି, ସେ ବି ପଚାରିଲା, ତା'ପରେ ସରଳ ସହଜ ହୋଇ ସେ ପରିବେଷ୍ଟନୀ ଆରେଇଗଲା, କିନ୍ତୁ ଲାଗୁଥାଏ, ମୁଁ ନିଜେ ନିଜେ କପରି ଟିକିଏ ଗମ୍ଭୀର ହୋଇଯାଇଛି, ଯନ୍ତିରେ ରେଣ୍ଟକା ସହିତ ମିଶିବା ଅପେକ୍ଷା ରେଣୁକା କଥା ହିଁ ବେଶି ବେଶି ମୁଁ ଭାବୁଛି ।

ପାନ ଆଣି ଦେଲାବେଳେ ତା' ହାତପାପୁଲି ଧରି ପକାଇ ଅନେକ ଗୁଡ଼ାଏ କଥା ଏକାମୁହିଁକେ କହିଦେବାକୁ ମନ କରିଥିଲି, ଅଥଚ ଖାଲି ପଚାରିଲି, "କ'ଣ, ସବୁ ଭଲ ତ ?"

ସେ ମୁହଁ ନୁଆଁଇ କାନ୍ଧ ଉପରକୁ ଲୁଗାଟା ଉଠେଇ ଦେଇ କହିଲା, "ଭଲ କ'ଣ ମନ୍ଦ କ'ଣ ? ଚାଲିଛି ।"

ଆଉ କିଛି କହିପାରିଲି ନାହିଁ । ତା'ପରେ ଅଳ୍ପ ସମୟ ଠିଆହୋଇ ରହି ସେ ଚାଲିଗଲା, କିନ୍ତୁ ଏଇ ଥରକରେ ମୁଁ ଟିକିଏ ସାହସ ପାଇଲି । ଅଳ୍ପ ସମୟ ପରେ ମୁଁ ଜଳଖିଆ ଖାଇବାକୁ ଗଲାବେଳେ ସେ ଯେତେବେଳେ ଜଳଖିଆ ଆଣି ଥୋଇଦେଲା, ତାକୁ ଜବରଦସ୍ତି ଗୋଟିଏ ମିଠେଇ ଖୋଇବାକୁ ଚେଷ୍ଟା କଲି । ସମସ୍ତେ ହସିଲେ, ମୁଁ ବି ହସିଲି, ସେ ନାନା ଭଙ୍ଗୀ କରି ପଳାଇଗଲା ।

ଏହା ପରେ ମୋ'ର ଅବସର ଘଡ଼ିଗୁଡ଼ିକ କଟିଗଲା, ତା'ର ବି । ମୋ'ର ସାହସ ହେଲା ତାକୁ ଡାକି ତା' ସହିତ ଗପ କରିବାକୁ । ସେ ସ୍ଥିରହୋଇ ଠିଆହୋଇ ଗପ କଲା, ସ୍ଥିର ଶାନ୍ତ ଥିଲା ତା' ଚାହାଣି । ଗ୍ରାମୋଫୋନ୍ ରେକର୍ଡ଼୍ ବାଜିଲା ପରି ମୁଁ କଥା କହି ଯାଉଥାଏଁ, ଯାହା ମୋ ମନକୁ ଆସୁଥାଏ, ତା' ସେ ଧୀର ସ୍ୱରରେ କଥା ଗପୁଥାଏ । ତା' ପରେ ତା'ର କ'ଣ ଦରକାର ପଡ଼ିଲା ଯେ ସେ ଉଠି ଚାଲିଗଲା ।

ଏହିପରି ସମୟ କଟିଲା । ତା'ର ସାନ୍ନିଧ୍ୟ ମତେ ଭଲ ଲାଗେ, ବେଳେ ବେଳେ ମୁଁ ଚିନ୍ତାଶୀଳ ହୋଇପଡ଼େଁ । ଚାଲିଆସି ସେ କହେ, "ଘରି ଭାବୁଚ ତ ବସି ବସି କ'ଣ ?" ସେ ବେଶି ଆସେ ନାହିଁ, ଥଟ୍ଟା ନକଲ ଲଗାଏ ନାହିଁ । ହୁରୁହୁରୁ ଫୁରୁଫୁରୁ ହୁଏନାହିଁ, କିନ୍ତୁ ଚାହିଁ ସଙ୍କୋଚ ନ ଥାଏ ।

ହେଇ ଦେଖନା, ତା' ବୋଉ ପାନ ଭାଙ୍ଗି ବସିଥିବେ, ସେ ବାଳ ମୁକୁଳା କରି ମୁଣ୍ଡବାନ୍ଧି ବସିଥିବ ଓ ମୋ ସଙ୍ଗେ କଥା କହୁଥିବ । ବେଳେ ବେଳେ କହିବ, "କୁଣ୍ଡେଇ ଦେବ କି ମୁଣ୍ଡ ?"

ଓଦାଲୁଗା ନ ପାଲଟି ଆସି ମୁହଁରେ ସ୍ନୋ ବୋଳି ହେଉଥିବ, କହିବ, "ଆସ ଆସ, ସ୍ନୋ ଟିକିଏ ବୋଳିଦିଅ ତମ ମୁହଁରେ ।" ଥରେ ଆଙ୍ଗୁଠି ବୁଡ଼େଇ ସ୍ନୋ ଟିକିଏ ଆଣି ତା ମୁହଁରେ ଲଗାଇବାକୁ ଚେଷ୍ଟା କଲି, କେବେ ମୁହଁ ଦେଖେଇଲା ନାହିଁ, ଲୁଗା ଘୋଡ଼େଇ ଦେଲା । ବହୁତ ଚେଷ୍ଟା କରି ତା' ମୁହଁରେ ବୋଳିଲି, ସାଲୁବାଲୁ ହୋଇ ଲାଗିଗଲା, ସେ ତାକୁ ଉଗଡ଼ ପୋଛି ପକେଇଲା । ଆଖିପୋଡ଼କ ଦିଶୁଥାଏ କେଡ଼େ କଅଁଳ ଆଉ ଥଣ୍ଡା । ସେ ହଲଚଲ ହେଲା ନାହିଁ, କିନ୍ତୁ ମୋ'ର ଆବେଗ ବଢ଼ି ଆସୁଥାଏ, ଥରି ଥରି ପଦାକୁ ଚାଲି ଆସିଲି ।

ସେ ମତେ ଭଉଣୀ ଭଳି ଲାଗୁଥାଏ ବେଶି ବେଶି । ଥରେ ତା' ବୋଉ ନେହୁରା ହୋଇ କହିଲେ, "ବାବୁ, ତୁମେ ରେଣୁକୁ ଏତେ ଭଲପାଅ, ଏଥର ଗୋଟିଏ ବର ଖୋଜୁ ଖୋଜ ତା' ପାଇଁ । ତୁମେ ସହରରେ ଅଛ, ଏତେ ଲୋକ ତୁମ ସଙ୍ଗରେ ପଢ଼ୁଛନ୍ତି, କେତେ ଯୋଗ୍ୟ ଲୋକ ତୁମ ନଜରରେ ଥିବେ"—ମୁଁ ଗର୍ବ ଅନୁଭବ କଲି । ତା'ର ଭଲ ମନ୍ଦରେ କହିବାକୁ ମୋର ଅଧିକାର ଅନୁଭବ କଲି ଓ ବରମାନଙ୍କ ସମ୍ବନ୍ଧରେ ଛୋଟ ବକ୍ତୃତାଟିଏ ଦେଲି । ଖୁସି ଲାଗୁଥାଏ । କଥା କହୁ କହୁ ଶେଷ ଆଡ଼କୁ

ମୁଁ ଅନ୍ୟମନସ୍କ ହୋଇ ଯାଉଥାଏଁ । ତା' ବୋଉ ଭଲକରି ସୁଙ୍ଗି ପାଚିଲା ପାନ ଦି'ଖଣ୍ଡି ବଢ଼େଇ ଦେଲେ । ମୁଁ ପଦାକୁ ବାହାରି ଆସିଲି ।

ବହି ଖଣ୍ଡେ ପଢ଼ୁ ପଢ଼ୁ ଅନ୍ୟମନସ୍କ ହୋଇ ଏଣ୍ଟୁତେଣ୍ଟୁ ଭାବୁଥାଏଁ, ବାସ୍ତବିକ, କେତେ ପରିବର୍ତ୍ତନ ହୋଇଛି ତାହାର । ଏ ପୁଣି ଦିନେ ବଡ଼ହେବ । ବଡ଼ହେବ ଭାବିଲେ ବିଚାରିଛ କଥା ମୋ'ର ସବୁଦିନେ ମନେପଡ଼େ । ଶକୁନ୍ତଳା ବଡ଼ା ହେବ ବୋଲି କଣ୍ୱ ଋଷିଙ୍କ ଚିନ୍ତା । ଏତିକି ଯା ସବୁତ ସମ୍ବନ୍ଧ । ତା'ପରେ ସେ ଚାଲିଯିବ, ସେ ହେବ ଜଣେ ଆଉ ମଣିଷ ।

କ'ଣ ତା'ର କାମ ଥିଲା ବୋଲି ସେ ଘର ଭିତରକୁ ପଶିଆସି ଅଲଗୁଣୀରେ ଲୁଗାପଟା ଅଣ୍ଡାଳିଲା । ତା' କାମରେ ସେ । ହଠାତ୍ ପଚାରିଲା, "କଣ୍ଟି ବହି ଆଣିଦେଲ ନାହିଁ ଗଧୂଭାଇ ?" ଏଣ୍ଟୁତେଣ୍ଟୁ କଥାଭାଷା ସାରି ସେ ଚାଲିଗଲା । ମୁଁ ବହୁତ ଚେଷ୍ଟା କରି ବହିରେ ମନ ଦେଇ ଦେଇ ଶୋଇ ପଡ଼ିଲି ।

କେତେ ସମୟ ଶୋଇଛି ଜାଣେ ନାହିଁ, ପୁଣି ରେଣୁକା ଆସି ମତେ ହଲେଇ ହଲେଇ ଉଠେଇଲା । କହିଲା, "ଭାତ ଖାଇବ ଆସ, ବୋଉ ଡାକୁଛି ।"

ତା'ର ସ୍ପର୍ଶ ଲାଗି ମତେ କେମିତି ଅସଜ ଅସଜ ଲାଗିଲା, ଧଡ଼ପଡ଼ ହୋଇ ଉଠି ଖୁବ୍ ଦମ୍ଭରେ ତିନି ଚାରି ଥର କହିଲି, "ହଁ ହଁ, ଭାତ ? ହଁ, ଚାଲ୍ ଚାଲ୍ ଚାଲ୍ ଚାଲ୍ ।" ମୋର ଉତ୍ସାହ ଦେଖି ତାକୁ ଭାରି ହସ ମାଡ଼ିଲା । କହିଲା, "ଭାରି ଭୋକ କରୁଥିଲା ବୋଧେ ?" ନିଜେ ଅପ୍ରସ୍ତୁତ ହୋଇ ତା'ର ପଛେ ପଛେ ଗଲି ।

ଏହିପରି ସବୁ ।

ସତେ ଯେମିତି ବହୁଦିନରୁ ସେ ମତେ ଚିହ୍ନେ, ମୁଁ ତାକୁ ଚିହ୍ନେ ।

କିନ୍ତୁ ଏଇ ଚିହ୍ନାଚିହ୍ନି ଭିତରେ ବେଳେ ବେଳେ ମୋ ନିଜ ମନକୁ ନୂଆ କରିବାକୁ ମୁଁ ସ୍ୱପ୍ନହିଁରହି ଦେଖେଁ, ସେତେବେଳେ ରେଣୁକାଠାରେ ନୂଆ କିଛି ଦେଖେଁ, ତେଣୁ କଥା ମଝିରେ ହଠାତ୍ ଗମ୍ଭୀର ହୋଇପଡ଼େଁ

ବା ହଠାତ୍ ପ୍ରକାଶ କରି ବସେଁ । ଆଉ ବୋଧହୁଏ ସ୍ମିତାଙ୍କର ବ୍ୟବସାୟୀ ବୁଦ୍ଧି ବେଶି ଅଛି ବୋଲି କ କ'ଣ ତା'ର ମନ ନୂଆ ପୁରୁଣା ସବୁ ପରିସ୍ଥିତିକୁ ସହଜଭାବେ ନେଇ ପାରିଥିଲା ଓ ନିଜ ମନର ସ୍ବପ୍ନଗୁଡ଼ିକୁ ସେ ଦୋଡ଼ାଇ ଶିଖିଥିଲା ।

କିନ୍ତୁ ମୃଦୁଳତା ଭିତରେ ସ୍ବପ୍ନଟିଏ ମୁଁ ଦେଖିଥିଲି, ନୋହିଲେ ମୋ'ର ମନରେ ତରଙ୍ଗ ଉଠି ନ ଥାନ୍ତା ବୋଧହୁଏ ।

ସଞ୍ଜବେଳେ, ଟେବୁଲ ଉପରେ ହାମୁଡ଼େଇ ହୋଇ ପରି ମୁଁ ମୁହଁ ଅଜାଡ଼ି ଦେଇଥାଏଁ । ଜହ୍ନ ଅଲୁଅ ବାଙ୍କହୋଇ ପଡ଼ୁଥାଏ ଝରକାବାଟେ । ସେପାଖେ ତାଙ୍କର ସୁନ୍ଦର ବଗିଚା ।

ସେ ଆସିଲା, ତା'ର କ'ଣ କାମ ଥିଲା ସେ ଘରେ, ପଚାରିଲା, "ହାଆସିଲଟା ଏଠି କୋଉଠି ଥିଲା ତୁମେ ଦେଖିଛ କି ?"

"ନା—ଶୁଣ୍ ।"

"ରହ ରହ ମୁଁ ଆସେଁ ।"

"ନା—ଶୁଣିଯା ଟିକିଏ ।"

ଆରପାଖ ଟେବୁଲ ଉପରେ ଭରଦେଇ ନଇଁପଡ଼ି ସେ କହିଲା, "କ'ଣ ?"

ମୁଁ କିଛି କହିଲି ନାହିଁ ।

କହିଲା, "କାହିଁକି ଡାକିଲ କ'ଣ କହୁନା ତ, ମିଛରେ—"

"ରେଣୁ—!"

ମୋ' ସ୍ବର ଶୁଣି ସାପ ପରି ସେ ମୁଣ୍ଡ ନୁଆଁଇ ଦେଲା, ଉତ୍ତର ଦେଲା ନାହିଁ । କହିଲା, "କ'ଣ କହୁଛ ?" ମୁଁ କିଛି କହିଲି ନାହିଁ । ମୁହଁ ନ ଟେକି ପୁଣି ସେ କହିଲା, । "ତୁମେ କାଲି ଚାଲିଯିବ ଘରଭାଇ ?"

"ହଁ ।"

"କାହିଁ ଆଉ ଦିନେ ଅଧେ ରହିଗଲେ ?"

"କଲେଜ ଖୋଲିବ ପରା—"

ଦୁହେଁ ତୁନି ରହିଲୁଁ । କେହି କାହା ମୁହଁକୁ ଚାହିଁଲୁ ନାହିଁ । ପାଖକୁ ପାଖ ଯୋଡ଼ିଏ ମୁଣ୍ଡ । ମୁହଁ ତଳକୁ, ଖାଲି ଦୀର୍ଘଶ୍ବାସ ।

ଦୀର୍ଘଶ୍ୱାସରେ ଦୀର୍ଘଶ୍ୱାସରେ ନିର୍ବାକ୍ ଭାବ-ବିନିମୟ, ଆମେ ପରସ୍ପରକୁ ବୁଝିଥିଲୁଁ ।

ମୁହଁ ଟେକିଲି, କହିଲି, "ଯାଉଛି ମୁଁ ପରେ ଆସିବି । ଘର କାମ ଅଛି । ବିଆସିଲିଣି କୋଉଠୁ ପାଇବି ମୁଁ !"

ତହିଁ ଆବେଦନ ସକାଳୁ ମୁଁ ଚାଲିଆସିଲି ।

ମୁଁ ଚାଲିଆସିଲି ଫେରି, କିନ୍ତୁ ମୋ'ର ମନରେ ପରାଗ ଟିକିଏ ରହିଗଲା ।

କାମକାର୍ଯ୍ୟର ବିହ୍ୱଳତା ଭିତରେ ତରୁଣ ମନରେ ପରାଗ ଆପେ ଆପେ ନିଭିଯାଏ । କିହିନ୍ତି ପରା, ମୁଁ କହୁଛି କିଛି ନଭେ ନାହିଁ, ଖାଲି ବଦଳିଯାଏ । ବଡ଼ ଦୁନିଆର ସଜ ପବନ ଯେତେବେଳେ ମୁହଁରେ ହାତ ବୁଲାଇଦିଏ, ବାହାରଟା ଶୀତଳ ହୋଇଯାଏ, ଭିତରର ଭାବନା ଅନ୍ୟ ବାଟ ନଦେଖେ ।

ସକାଳର ସ୍ଫୂର୍ତ୍ତି ଓ ରାତିର ତନ୍ଦ୍ରା ଭିତରେ ସମ୍ବନ୍ଧ ନାହିଁ କିଏ କହିଲା ? ସକାଳର ଜାଗରଣ ରାତିର ଅଳସ ନିଦର ପ୍ରତିବାଦମୂଳକ ପ୍ରକାଶ ।

ତେଣୁ ଲୁହଟୋପାକ କବିତା ପାଲଟିଯାଏ ।

ଜୀବନରେ କବି କେବେ ବୋଲାଇ ନାହିଁ, କବିତା ଲେଖି ନାହିଁ, ସାଧାସିଧା ମଜୁରିଆ ମୂଳିଆ ପରି ବଞ୍ଚିଆସିଛି, କିନ୍ତୁ ଯଦି ଥାଆନ୍ତା ସେଦିନର ଚିଠିଗୁଡ଼ାକ ମୋ ପାଖେ, ତେବେ ଦେଖାଇ ପାରନ୍ତି, ସାଧା କଥାରେ ସାଧା ମଣିଷ ପୁଣି କିପରି କବିତା ଲେଖେ ।

କାରଣ ହଷ୍ଟେଲକୁ ଫେରି ଅବସର ସମୟରେ ଚିଠି ହିଁ ଖାଲି ଲେଖିଲି, ବଡ଼ ବଡ଼ ଚିଠି, ଯାହାର ମୂଳ ନାହିଁ କି ଶେଷ ନାହିଁ । ସମସ୍ତଙ୍କ ପାଖକୁ ଚିଠି ଲେଖିଲି, ଏ ବୋଧହୁଏ ମୋ'ର ଭିତର ମନର ମୋ' ନିଜ ପ୍ରତି ପତିଆରା, କାରଣ ବେଶି ଚିଠି ଲେଖିଲି ରେଣୁକା ପାଖକୁ ।

ବୋଉ ପାଖକୁ ଚିଠି ଲେଖେଁ—

"ବୋଉ, ମନ ଭଲ ଲାଗୁନାହିଁ । ଏ ଧୋବଲା କୋଠାରେ ଚଳୁନି ଆଲୁଅ ତଳେ ବସି ମୋ'ର ପ୍ରାଣ ଝୁରି ମରୁଛି ଆମ ଗାଁର ସ୍ବଳଦରକୁ, ଯେଉଁଠି କଅଁଳ ମାଟି କାନ୍ଥକୁ ଭୂ ଲିପିପୋଛି ଆଙ୍କିସି ଆଙ୍କିସି ଶାଙ୍ଗିଲିଆ କରିଦେଇଛୁ, ଯେଉଁଠି ଜଳୁଥିବ ଆମର ପୁରୁଣା ପିତଳ ଦଲଟଣଟି, କାଚ ଫାଟିଯାଇଛି ଠାଏ ଠାଏ । ବୋଉ, ଆମ ଘର ସବୁ ଆମର, ତୋ'ର ମୋ'ର, ଆମ ସମସ୍ତଙ୍କର । ଏ ଘର ଆମର ନୁହେଁ, ଖାଲି ଗୋଟାଏ ପାନ୍ଥଶାଳା, କିଏ କେତେ ଆସିଛନ୍ତି ଯାଇଛନ୍ତି, କିଏ କେତେ ଯିବେ ।

ପିଲାଏ କେତେ ସଉକ କରି ଘର ସଜାଇ ରଖିଛନ୍ତି, ଦେଖୁଥିବୁ ପରୀକ୍ଷା ସରିଲାକ୍ଷଣି ଓଳିଟାଏ ଅଟକିଗଲେ, ବାହାରର କୁଣିଆ ପରି ମୁଠାଏ ଖାଇବାକୁ ହେଲେ, ମୁଠାଏ ପଇସା ପଡ଼ିବ ।

ଏତେ ବଡ଼ କଲେଜ, ଆମ କଲେଜ, ଯେଉଁମାନେ ଏଠୁ ବାହାରି ଯାଇଛନ୍ତି, କାହାନ୍ତି ସେମାନେ ଆଜି ? ଏକଣ୍ଡେଣ ତାରିଖ ଗଡ଼ି ପନ୍ଦର ହୋଇଗଲେ ଦରମା ନ ଦେଇଥିଲେ ସବୁ ନାଁ କଟିଯିବ !

ଆମର ପ୍ରଫେସରମାନେ ରହିଁଛନ୍ତି । ଦଳ ଦଳ ପିଲା ଆସୁଛନ୍ତି, ପୁଣି ଦଳ ଦଳ ଉଡ଼ି ଚାଲିଯାଉଛନ୍ତି । ହ'ଉଳିଆ ସ୍ନେହ ଆଦର, କାନ୍ଥରେ ବାଡ଼ରେ ବଡ଼ ବଡ଼ ଫଟୋ—ତା'ପରେ ?"

ବେଶି ଚିଠି ଲେଖେଁ ରେଣୁ ପାଖକୁ, କିନ୍ତୁ ଦଶଟାରୁ ଗୋଟାଏ ଡାକରେ ଦିଏଁ କି ନାହିଁ । ବାକିଗୁଡ଼ାକ ଚିରି ପକାଏଁ । କେତେଗୁଡ଼ାଏ ଲେଖି ବାକ୍ସରେ ଥୋଇଦିଏଁ ।

ଚିଠି ଲେଖିଲେ ନିଜ ପାଖେ ନିଜେ ବାରମ୍ବାର ଧରାପଡ଼ିଯାଏଁ ସବୁ ! ଯାହା ମୋ ଚିନ୍ତାରେ ନାହିଁ, ତାହା ଅଜାଣତରେ କପରି

ବାହାର ଆସେ ମୋ'ର ମନରୁ, ନିଜ ଶଠି ପଡ଼ି ନିଜକୁ ହିଁ ଲଜମାଡ଼େ, ଏଗୁଡ଼ା ମଣିଷ ହୁଏ ନା କ'ଣ ?

ଲେଖେଁ—

"ଆଦରର ରେଣୁକା,

ଏଇ ନିର୍ଜନ ରାତିରେ, ଜହ୍ନ ଉଠୁଛି ମେଘ ଆଢୁଆଳରୁ, ଆଜି ତୁ ମୋ'ର ମନେ ପଡ଼ୁଛୁ । ସ୍ୱପ୍ନେ ଦେଖୁଛି ତୋ'ର ଅଖଳା ହସ ପରି ପଡ଼ିଆ ଉପରେ ଜହ୍ନ ଆଲୁଅ ଲେଟୁଛି । ରହିପାରେଁ କି ତାକୁ ଭୁଲି ଏଇ କୋଠରି ଭିତରେ ? ମୁଁ ଏଠି ପଡ଼ିରହିଛି ସତ, କିନ୍ତୁ ଭାବିଲା ମାତ୍ରକେ ମୋ'ର ମନ ପଳାଉଛି ଦୂରକୁ—ବହୁ ଦୂରକୁ ।

ତୁ କ'ଣ ମୋ'ର ପରି ମନେ ଭାବିପାରୁଛୁ ? ପାଗ୍ଳେଟି ନେବାକୁ ତୋ'ର ମନ ଫିଟି ଚାଲିଆସିଛି, ନଈ ସେପାରିର କେଉଁ ନିଘୁଞ୍ଚିଆ ସୋରିଷ କିଆରି ମୁଣ୍ଡକୁ ?

ସ୍ୱପ୍ନ ପରି ଲାଗୁଛି ସବୁ, ଯେପରି ତୁ ଆଉ ମୁଁ, ମୁଁ ଆଉ ତୁ । କେଉଁ ଅନ୍ଧାରୁଆ ନିଘୁଞ୍ଚିଆ ରାଜପୁରୀରେ, ଲୋକଗହଳିଠୁଁ ଦୂରରେ ଶୂନ୍‌ଶାନ୍ ଗୋଟାଏ ପାହାଡ଼-ମହୁଡ଼ ଉପରେ । ଅନ୍ଧାର ଭିତରେ ଜହ୍ନ ଆଲୁଅ ଛିରିକି ପଡ଼ୁଛି ସ୍ଥାନେ ସ୍ଥାନେ, ଘରେ ଘରେ ତେମଣି ଆଉ ବାଦୁଡ଼ି, ବାହାରେ ନିସ୍ତବ୍ଧ ସୁନ୍ଦର ରାତି—କାହିଁ ତୁ ଅବା କାହିଁ ମୁଁ—କିନ୍ତୁ ଆମେ ପରସ୍ପରକୁ ଖୋଜୁଛୁଁ—ଖୋଜୁଛୁଁ ।"

ଲେଖିସାରି ପଢ଼ି ଦେଖେଁ କ'ଣ ଗୁଡ଼ାଏ ପାଗଳ ପରି ଗାରେଇଛି ! ଏ ପୁଣି ରେଣୁକା ପାଖକୁ ଯାଆନ୍ତା ! କ'ଣ ଭାବନ୍ତା ସେ !

ଜାଣିପାରି ନ ଥିଲି ସେତେବେଳେ ଯେ ଏଇ ପାଗଳାମି ଭିତରେ ମୋ'ର ମନ-ଗହ୍ୱରର ଗୋପନ କଥା ଛନ୍ଦ ପର୍ଯ୍ୟାୟରେ ଝରିପଡ଼ୁଥିଲା, ଯେପରି ହୁଏ, ଅଥଚ ଆମେ ବୁଝି ନ ପାରି ହସରେ ଉଡ଼ାଇ ଦେଉଁ । ବୋଉ ପାଖକୁ ଶଠି ବା ରେଣୁକା ପାଖକୁ ଶଠି—ତା'ର କାହାଣୀ ହସରେ ଉଡ଼ାଇଦେଇ ହୁଏ, ଭଗିଣୀ ଅବହେଳା କରିହୁଏ ନାହିଁ । ମନ ଭିତରେ ଯେଉଁ ଭାବର ଗୁଞ୍ଜନ ଲାଗେ, ତାହାର ଭଗିଣୀକୁ ପ୍ରକଟାଇବାକୁ

ଯେକୌଣସି କାହାଣୀ ଗଢ଼ିଦେବାକୁ ପଡ଼େ, ହଜେ ଯେପରି ଧରା ନ ପଡ଼ିବ ସେଥିପାଇଁ । କାହାଣୀ ଆପେ ଆପେ ସୁନ୍ଦର ହୋଇଯାଏ, ଯେପରି ଘରକୁ ଦେଖାଇ ପରକୁ ।

ଦୁନିଆର ଦଶଲୋକ କାହାଣୀର ମାୟାରେ ଭୁଲନ୍ତି, ଚେଷ୍ଟା ରାଗିଣୀ ଧରା ପଡ଼େନାହିଁ, ଅଥଚ ପ୍ରକାଶ ପାଏ ।

ଚିଠି ଲେଖିପକାଏ । ମନ ଭିତରେ ଜଗୁଆଳ ଭାଇ ନାଲି ଆଖି ଦେଖାଇ ମୋ'ର ହାତରେ ଚିଠି ଧରେଇ ପକାଏ ।

ପୁଣି ମୁଁ ଚିଠି ଲେଖେଁ—

"କଲ୍ୟାଣୀୟା ରେଣୁକା,

ମୋ'ର ସ୍ନେହ ଆଶୀର୍ବାଦ ଜାଣିବୁ । ମୁଁ ଭଲ ଅଛି—ମାନେ ସୁଖେ-ଦୁଃଖେ ଚଳିଯାଉଛି, ସଂସାରରେ କିଏ ନ ଚଳେ ?

ଲେଖିବାଭଳି ସେପରି କିଛି ବଡ଼ କଥା ଘଟି ନାହିଁ । ମୋ'ର ବା ପରିବର୍ତ୍ତନ କ'ଣ ଅଛି ¿ ଲମ୍ବା ପାହାଡ଼ରେ ଅକର୍ମଣିଆ ପରି ମୁଁ ଅପରିବର୍ତ୍ତନୀୟ ।

କିନ୍ତୁ ମତେ ଭଲ ଲାଗୁନାହିଁ । ବେଶି ବେଶି ମନ ଖରାପ ହେଉଛି, ତାହାର କାରଣ ବୋଧହୁଏ ଏହାହିଁ ଯେ, ମୁଁ ବେଶି ଭାବେଁ ।

ମୁଁ ଭାବେଁ କେତେ ଦୂରରେ ପଡ଼ିଛି ମୁଁ, ଯେପରି ଗୋଟାଏ ଚେଲସଣାରେ ବନ୍ଧା ହୋଇଛି । ମୋ'ର ଧରାବନ୍ଧା ଜଉଟି ଛଡ଼ା ଆଉ କିଛି କରିବାକୁ ନାହିଁ ।

ପୁଣି ଭାବେଁ, ସମସ୍ତଙ୍କ କଥା ଗୋଟି ଗୋଟି କରି । ମୋ' କଥା ବୋଧେ କେହି ଭାବେ ନାହିଁ ।

ହେଇ ଦେଖ, ରାତି ଏଗାରଟା—ହଷ୍ଟେଲ୍ ଶୂନ୍‌ଶାନ୍, ମୁଁ ବସି ତୋ' ସାଙ୍ଗେ କଥା ଗପୁଛି ।

ବାରମ୍ବାର କହୁଥିଲୁ ଯିବାପାଇଁ । ତୋ'ର ଏତେ ଶ୍ରଦ୍ଧା, ଆଦର, ଗଲେ କ'ଣ ହ'ନ୍ତା ନାହିଁ ?

ଚାହିଁଲେ ଯଦି ସବୁ ଘଟୁଥାନ୍ତା, କେଡ଼େ ସୁନ୍ଦର ହୁଅନ୍ତା ଜୀବନ, କିନ୍ତୁ ଘଟେ ନାହିଁ । ତୁମ ଘର ଆଉ ଏ ହଷ୍ଟେଲ୍, ମଝିରେ କେତେ ଗାଁ-ଗଣ୍ଡା, ନଈ ନାଳ, ପାହାଡ଼ ଜଙ୍ଗଲ ! କେତେ ଦୂର ।"

ରାତ୍ରିରେ ଉଦାସ ମନରେ, ପଢ଼ି ଦେଖେଁ, ଭଲ ଲାଗେ । ସକାଳେ ଆଉ ଥରେ ପଢ଼େଁ, ଧାନ ଆଳୁଅରେ । କେତେ ଅଦରକାର ଅବାନ୍ତର କଥା ବୋଧେ ଲେଖିଛି, କ'ଣ ହେବ ସେଗୁଡାକ ? ଚାରିକୁଟି ନୂଆ ଚିଠି ଲେଖେ ।

"ମୁଁ ଭଲ ଅଛି, ତୁ କପରି ଅଛୁ, ଚିଠି ଦେଉଥିବୁ"...ତା'ପରେ ଆପେ ଆପେ ହୋଇଯାଏ ।

"ଭୁଲିବୁ ନାହିଁ । କେମିତି କେମିତି ଅଛୁ, ରମା କେମିତି ଅଛି", ଭାଉଜ ଚିଠି କେବେ ଦେଇଥିଲେ, ପୁଣି ଗଢ଼ିଗଲି ଆଣେ ସେଇ କଥାକୁ ।

"ରହିଁଲେ ଯାହା ସବୁ ଘଟୁଥାନ୍ତା...! ତୁମ ଘର ଆଉ ଏଠା ମଝିରେ ଯେ କେତେ ବଣ ଜଙ୍ଗଲ, ନଈ ନାଳ, ରେଳରାସ୍ତା ଆଉ ଶଗଡ଼ ଗୁଳା--କେତେଦୂର ! ନାଲି ସଡ଼କ ଉପରେ ଖୋଜ ପକାଇଲେହେଁ ମୁଁ ବୁଝେ—କେତେଦୂର ! କ'ଣ ଆଉ ଲେଖିବ ମନ ସୁଖ ନାହିଁ ।"

ସେଣ୍ଟିକା ଜବାବ ଦିଏ—

"ପୂଜନୀୟ ବୋଧୁଭାଇ,

ତୁମ ଚିଠି ପାଇ ଭାରି ଖୁସି ହେଲି । ଯାଇହଉ ତୁମେ ଭୁଲିପାଇନା, ମୁଁ ଭାବିଥିଲି ବା ବୋଧୁଭାଇ ପାସୋରି ସାରିବେଣି !

ଆମ ଘର କୁଆଡ଼େ ଭାରି ଦୂର । ହଁ, ଦୂର ହବ ନାଇଁ କାହିଁକ ! ଯାହାର ଆସିବାକୁ ମନ ନ ଥାଏ, ତାକୁ ତ ସବୁ ଦୂର ! ହଉ ହଉ । ମନ ଥିଲେ ଆସି ପାରନ୍ତ ନାହିଁ କୁଆଡ଼େ ! ଖାଲି କଥା !"

ପୁଣି ମୁଁ ଚିଠି ଦିଏଁ । ସେ ତା'ର ଉତ୍ତରରୁ ଜବାବ ଦିଏ । "ଭାରି ଭଲ ଲାଗିଲା ତୁମ ଚିଠି । ସତ କହୁଛି, ମୋ ମୁଣ୍ଡବିନ୍ଧା ଭଲ ହୋଇଗଲା ତୁମ ଚିଠି ପଢ଼ି ।

ମତେ ଏତେ ସୁନ୍ଦର ଚିଠି ଲେଖି ଆସେ ନାହିଁ, ଲେଖି ବସିଲେ ଡର ମାଡେ । କ'ଣ ଏଣ୍ଡୁଡେଣ୍ଡୁ ଲେଖି ଦଉଥିବ, ତୁମେ କାନରେ ଗଣ୍ଠି ପକେଇ ଧରୁଥିବ, ଥଟ୍ଟା କରୁଥିବ ।

ଭାବେ ଯା ଲେଖିବ, ତା' ଲେଖିବ, ମନେ ପଡେନାଇଁ କିଛି ଲେଖିବସିଲ ବେଳକୁ, ତଥାପି ଯାହା ଆସେ ଲେଖେଁ, ନଇଲେ ତୁମେ ତ ଯେଉଁ ମଣିଷ ! ତୁଚ୍ଛା କଥାରେ ମୁହଁ ଫୁଲେଇ ଅଡ଼ି ବସିବ । ଶେଷରେ, "—ଯାଉଚ, ମୁଣ୍ଡ ବାନ୍ଧିବ, ଗାଳି ଦବ ନାଇଁ ମୋ' ଧଣ ।"

ଯେକୌଣସି କାମରେ ବୁଡ଼ି ରହିଥାଏଁ ପଛେ, ତା'ର ପିଲାଳିଆ ଚିଠି ମୋର ଧ୍ୟାନ ଭାଙ୍ଗିଦିଏ । ଇଚ୍ଛା ହୁଏ, ତରବର କରି ଖଣ୍ଡେ ଜବାବ ଲେଖିଦିଏଁ, କିନ୍ତୁ ହୁଏନାହିଁ । ଖାଲି ବସି ବସି ଭାବେ ।

ସ୍ୱପ୍ନ ପରି ସବୁ ଦିଶିଯାଏ । ହେଇ, ମୁଣ୍ଡ ବାନ୍ଧୁଥିବ ସେ ବସି ।

ମନ ଉଚ୍ଛୁଳି ଉଠେ, ତା'ର କଳ୍ପିତ ହସର ଉତ୍ତର ସ୍ୱରୂପ ମୁଁ ନିଜେ ହସି ପକାଏଁ ।

କ୍ରମେ ଆନନ୍ଦ ଭୁଲିଯାଏ, ଆସେ ପ୍ରତୀକ୍ଷାର ଦୁଃଖ, ପରେ ଦୁଃଖ ହିଁ ରହିଯାଏ । ମୋ'ର ଦୁଃଖ, ମୋ'ର ନିସ୍ତଚିଆ ଉଦାସୀ ମନର ଦୁଃଖ । ସଞ୍ଜରେ ଦିନ ସରେ, ଚନ୍ଦ ଉଠେ ନାହିଁ, ତାରା ଫୁଟେ ନାହିଁ ।

ଖାଲି ଅନ୍ଧାର ଝଲ୍‌ଝଲ୍‌··· ।

କାହା ପାଇଁ ମନରେ ଦୁଃଖ ହୁଏ ? ଏପର୍ଯ୍ୟନ୍ତ ଜାଣିପାରିଲି ନାହିଁ, ବେଳ ସରିବାକୁ ଆସିଲା । ଦେଖିଛି, ଦୁଃଖ ମାଡ଼ିଆସେ ମନର କେଉଁ କୋଣରୁ, ଅଜଣା ଦୁଃଖ । ଆନନ୍ଦ ଭିତରେ ଦୁଃଖ ଗୁଣ୍ଡିରେ କୋହ, ଉଠାଇ ପାଏ, ସୁଖର ମଜଲିସ୍ ଦୁଆରମୁହଁରେ ପଡ଼େ ଦୁଃଖର ପ୍ରେତ-ଛାଇ, କାରଣ ଭାବିବାକୁ ତର ମିଳେ ନାହିଁ ।

ରେଣୁକା ପାଇଁ ମୁଁ ଦୁଃଖ କରନ୍ତି କାହିଁକି ? ଆହା, ସୁନା ଭଉଣୀଟି, ଭଗବାନ୍ ତା'ର ମଙ୍ଗଳ କରନ୍ତୁ । ତା' ଘରେ ସେ, ମୋ ଗୃହାଳେ ମୁଁ । ଦେଖା ତ ପୁଣି ହେବା । ପୃଥିବୀଟା ଅତି ଛୋଟ ଯେ !

କିନ୍ତୁ ତଥାପି ମୁଁ ସୁଖରୁ ଦୁଃଖକୁ ଗଡ଼ିପଡ଼େଁ ଆପେ ଆପେ, ସେ ଯେପରି ମୋର ଚୁମ୍ବକ ।

କଳ ସ୍ୱିଚ୍ ଟିପେ, କଳ ବନ୍ଧ ଖୋଲେ, କଳ ଭୂମିତାନ ବସି ବନ୍ଧ ପଡ଼େ । ପଢ଼ା—ଘଣ୍ଟା । ପଢ଼ୁ ପଢ଼ୁ ପୁଣି କଳ ବିଗିଡ଼ିଯାଏ, ପାଠ୍ୟ ସାହିତ୍ୟର ବାଣୀ ଜୀବନ ପାଏ, ଅଙ୍କିତ କଅଁଳ ଉଠେ ।

ସୁଲୁ ସୁଲୁ ପବନ ବହେ, ଅନ୍ଧାର ଭାଙ୍ଗେ, କେଉଁ ନିଘଞ୍ଚିଆ ଜଙ୍ଗଲ ମଝିରେ ବଡ଼ ପୋଖରୀ ଉପରେ ଜହ୍ନ ଉଠେ । ଦୂର ଦୂର ହେଁ-ହେଁଇଁ ଚଢ଼େଇ ବୋବାଏ । ଧୀର ପବନରେ ପାଣି ଛଳ ଛଳେଇ ଉଠେ ।

କଳ ବିଗିଡ଼ିଯାଏ ।

ଉଚ୍ଛନ୍ନ ହୋଇ ହେଁ-ହେଁଇଁ ଚଢ଼େଇ ବୋବାଏ···

ଗାଉଜବୋଉ ବେଳକାଳକେ ଚିଠିଖଣ୍ଡେ ଲେଖନ୍ତି ।

"ଗଧୁ, ଭୁଲିଗଲୁ କି ? କାହିଁକି ପଚାରିବ ? ତୁମ ଚିଠିର ଜବାବ ଅବଶ୍ୟ ମୁଁ ଦେଇନାହିଁ; କିନ୍ତୁ ଦେଇ ନ ଥିଲେ ବି ମୁଁ ଦେଇଛି । କାହିଁକି ଜାଣ ? ମୁଁ ଭାବୁଛି ନିତିଦିନ ତୁମ ପାଖକୁ ଯେପରି ଚିଠି ଦେଉଛି । ମନେ ମନେ ଦେଉଛି । ଲେଖିଥିଲେ ଆଉ ଅଧିକ କ'ଣ ହୁଅନ୍ତା ?

ଏଥର ଗଧୁ ପାଇଁ ଗୋଟିଏ ଗଧୁଆଣୀ ( ନା ଗଧୀ ? ) ହେଲେ ଖରି ଭଲ ହ'ନ୍ତା, ନୁହେଁ ? ଗଧୁଆଣୀ ( ନା ଗଧୀ ? ) ଆଇଲେ କ'ଣ ମନେପଡ଼ିବନ୍ତୁ ଆମେ ? ଆହୋଉଁ ତ ପଚାରୁନା—ଆଉ !

ଚିଡ଼ୁଛ କି ? ଛି—ମୋ' ଗଣ—ସୁନା ଭାଇଟା ପରା !

ତୁମେ ଲେଖିଥିଲ ଆମେ ସବୁ ଏକାଠି ଯଦି ଗାଁରେ ରହିଥାନ୍ତୁ କେଡ଼େ ଭଲ ହ'ନ୍ତା । କିନ୍ତୁ ତା' ହୋଇପାରିବ କିପରି ? ବିଧାତାଙ୍କ ନିର୍ଦ୍ଦେଶରେ ଯେଝା କର୍ମ ଯେଝା ଆଦରି ବାଉଟି ପରି ବୁଲିବାକୁ ପଡ଼ୁଛି, ସେଥିପାଇଁ ଭାବି କ'ଣ ହେବ ? ସେ ସବୁ କଥା ମନେ ପକେଇଲେ ମନରେ କଷ୍ଟ ହୁଏ ।

ଏପରି ଅନେକ କଥା ତ ଅଛି ଯାହା ଭାବିଲେ କଷ୍ଟ ହେବ, କ'ଣ ହେବ ସେଗୁଡ଼ା ଭାବି ? ତୁମେ ସ୍ନେହରେ ମତେ ଭାଉଜୋଉ ବୋଲି ଡାକିବ, ମୁଁ ସ୍ନେହରେ ପାନଖଣ୍ଡେ ଦେବି, ଏତିକି ଆମର ସୁଖ, ଆଉ ବେଶି କ'ଣ ହେବ ? ଯେତେ ଦିନ ସଂସାରରେ ଥିବା ଏଇ ଖୁସିରେ ଖୁସିରେ ଦିନ କଟିଯାଉ, ଭଗବାନ୍ କରନ୍ତୁ ।

କ'ଣ ଆଉ ଲେଖିବି ? ଯାଉଛି ରୋଷେଇ ଆରମ୍ଭ କରିବି । ବଡ଼ ତରବର ହେଉଛି । ଏଣ୍ଟେତେଣ୍ଟେ ଗାରେଇ ପକେଇଲି, ଅକ୍ଷରଗୁଡ଼ାକ ଖରାପ ହୋଇଗଲା, ଦୋଷ ଧରିବ ନାହିଁ । ଚିଠି ଦବ, ମୋ' ରାଣ । ଇତି ।"

ତାଙ୍କ ଚିଠି ପଢ଼ିଲେ ମନ ଭିତର କୁତୁକୁତୁ ହୁଏ, ଭାରି ଖୁସି ଲାଗେ । ତାଙ୍କର ସ୍ନେହ ସତକୁ ସତ ଝରିପଡ଼େ ଯେପରି ଆକାଶରୁ, କଅଁଳ ଖିଅରେ ବାନ୍ଧି ହୋଇଯାଏ ଦେହଟାଗୋଟାକ । ମନ ମହକି ଉଠେ ।

ବେଳେ ବେଳେ ମୁଁ ଭାବେଁ—

କାଳି-ଜୋରର ପଦ୍ମବଣ ଭିତରେ ପାଣି ଉପରେ କାନଟି ବିଛେଇ ଯେପରି ମୁଁ ଶୋଇପଡ଼ିଛି, ମୋ'ର ଦେହ ଉପରେ ପଦ୍ମ ଫୁଟୁଛି, ପଦ୍ମ ମୁଦି ହେଉଛି, ଦିନ ବୁଡ଼ିଯାଉଛି, ଦିନ ଉଁଛି···।

ପରୀକ୍ଷା-ବେଳରେ କାହାରି ପାଖକୁ ଚିଠି ଲେଖିପାରି ନ ଥିଲି କେଉଁଦିନୁ ।

ଦିନେ ସେ ଚିଠି ଲେଖିଥିଲା, ବସି ପଢ଼ୁଥିଲି—

"ମନଦେଇ ପଢ଼, ପାଶ୍ କରିବ, ଚାକିରି କରିବ, ବାହା ହବ ।

ତୁମ ବାହାଘରକୁ ଆମକୁ ସବୁ ନେବ କି ନାହିଁ କହିଲ ? ଅପା ବୋଧେ ଆସିବ, ତାକୁ ଆମ ଗାଁକୁ ଆଣି ତା' କାନ ଧରି ମୁଁ ବୁଲିଯିବି ।

ଯୌତୁକରୁ ଭାଗ ଦବ କି ନାହିଁ ଲେଖିବ । ନ ଦେଲେ ମୁଁ କଜିଆ କରିବି । ମୁଁ ଗୋଟିଏ ରୁମାଲ ବୁଣୁଛି । ତୁମେ ପରୀକ୍ଷା ପରେ ଯଦି ଆସିବ, ତୁମ ନାଁ ଲେଖିଦେବି, ଫୁଲ ପକେଇଦେବି; ନାଁ ସିଲେଇ କରିଦେବି ।

ଏ ଚିଠି ଭିତରେ ଯେଉଁ ଉଲ୍ ଟିକକ ଦେଲି, ସେମିତିଆ ଉଲ୍ ବଜାରରେ ଅଛି କି ନାହିଁ ଲେଖିବ । ମୁଁ ଗୋଟିଏ କୁକୁର ବୁଣୁଥିଲି, ଉଲ୍ ସରିଗଲା, ଲାଙ୍ଗୁଡ଼ଟା ହୋଇପାରି ନାହିଁ ।

ମୁଆଁ ପିଠା ଖାଇ ପେଟଟା କଳ୍ କଳ୍, କଳ୍ କଳ୍ ହଉଚି, ହାଲୁଟି ଆସୁଚି । ମୁଁ ଆଜି ଲେଖିପାରୁ ନାହିଁ ।"

କେତେଗୁଡ଼ାଏ କଥା ଏକାବେଳେକେ ସେ କହି ପକେଇଛି । ତା' ଉଲ୍ କଥା, ଆଜି ମୁଆଁ ପିଠା କଥା । ମୁଁ ଭାବିଲି, ଥଟ୍ଟା କରୁଛି । ଦେଉଛି ରହ ।

ସେଦିନ ରାତିରେ ପୁଣି ମୋ ଭବିଷ୍ୟତ୍ କଥା ମୁଁ ଭାବିଲି । ପାସ୍ ହୋଇଯିବ । ତା'ପରେ— ?

ଏଇ 'ତା'ପରେ' କଥାଟା ନିରେଖା ହୋଇ ଭାବିଲେ ବରାବର ମୋ ଆଖି ଆଗେ ଦିଶିଯାଏ—ଯେପରି ଗୋଟାଏ ଅସୁମାରି ବାଟ, ବାଟେ ବାଟେ ଘୋର ଅନ୍ଧାରରେ ମୁଁ ଚାଲିଛି । ଦି'ପାଖର ଗହଳ ଗଛ ଦି'ଧାଡ଼ି ଦିଶୁଛି ଅନ୍ଧାରୁଆ ସୁଡ଼ଙ୍ଗର କାନ୍ଥ ପରି । ଅନ୍ଧାର ଆଡ଼କୁ ମୁଁ ସତେ ଚାଲିଛି । କେବଳ ବହୁତ ଦୂରରେ, କୋଶେ କି ଦି' କୋଶ ଦୂରରେ, ଗୋଟାଏ ନଟଲ୍ଣ ଆଲୁଅ । ଯେତେ ଚାଲେଁ, ଆଲୁଅଟା କିନ୍ତୁ ଛୁଏନାହିଁ, ସବୁବେଳେ ଆଗରେ । କେଉଁ ବାଙ୍କରେ କେତେବେଳେ ଲୁଚିଯାଏ । ପୁଣି ଆଗେ ଆଗେ ।

ସେଇ ନଲ୍ଟଣଟା ମୋର ଭବିଷ୍ୟତ୍ ।

ଭାବୁ ଭାବୁ ବିଭାଘର କଥାଟା ଝାପ୍ସା ହୋଇ ଆଗରେ ଦିଶିଲା । ଯେପରିକି ପଞ୍ଝାଏ ଜୁଳୁଜୁଳିଆ ପୋକ ପାଖକୁ ପାଖ ଲାଗି ଉଡ଼ିଉଡ଼ିକା ଚାଲିଛନ୍ତି ଆଗେ ଆଗେ ଦୂରେଇ ।

ଉତ୍ତପ୍ତ ଆଲୁଅ ବୁନ୍ଦାର ପରିକ୍ରମା ଭିତରେ ରେଣ୍ଟର ଷୋଳକଣା ରହିଛି, ଆଉରି କେତେ ଅଧା ଅଧା ସ୍ମୃତି ଅବସ୍ଥିତ ଲୁଚିଯାଇଛି; କିନ୍ତୁ କେହି ସମୁଦାୟ ପରିକ୍ରମାଟାକୁ ଆଉ ବୋଲି ରହି ପାରୁନାହାନ୍ତି ଯେ ।

ସେଇ ନଲ୍‌ଟଣ ଆଜି ସେ ଜଳୁଜୁଳିଆ ପୋକପଞ୍ଝାକ, ଜଉପୋ ଝାପ୍‌ସା । ବହୁ ଦୂରରେ···।

ପରୀକ୍ଷା ପାଖେଇ ଆସିଲା । ସମସ୍ତେ ସବୁବେଳେ ପାଠ ପଢ଼ିଲେ । ସ୍ନେଳଂସଲ୍‌ଟ ଆଉ ନାଶ ଶୁଙ୍ଘିଲୁଁ, ରୁଟି ଖାଇଲୁ, ଚ୍ହା ପିଇଲୁ, ପାଠ ପଢ଼ିଲୁଁ । ଶତାବ୍ଦୀ ପଛେଇ ଯାଇ ଫେରି ଆସିଲା ରୁକ୍ଷ କଠିନ ବ୍ରହ୍ମଚର୍ଯ୍ୟାଶ୍ରମ । ଦିନ କଟା ହେଲା ଘଣ୍ଟାରେ, ସମୟ କଟା ହେଲା ଦିନରେ । ଆମେ ପରୀକ୍ଷା ପାଇଁ ଅଣ୍ଟାଭିଡ଼ ପ୍ରସ୍ତୁତ ହେଲୁଁ । ଦୁଶ୍ଚିନ୍ତା ।

ମନ୍ତ୍ର ମୁହଁରେ ହସ ପରି ଅବୁଝା ମନର ଅଲେଖା କଥା ସେଇ ଦୁଶ୍ଚିନ୍ତା ଭିତରେ ବେଳେ ବେଳେ ଛପି ଛପି ଆସି ଚାଲିଯାଏ । କେତେ ଲୋକ ମନେପଡ଼ନ୍ତି । ଆଜି ମନେପଡ଼େ—ରେଣୁକା, କୌଣସି ସ୍ମୃତି ମନକୁ ଆଉ ବୋଲି ଅଟକି ରହେ ନାହିଁ । ଆଖି ଆଗରେ ଖାଲି ଜଳଜଳ ଦିଶେ, ଆପଣାର ସ୍ୱାର୍ଥ । ସ୍ୱାର୍ଥପରତା କେତେ ବେଶରେ ମନକୁ ଭୁଲାଇ-ଥାଏ, ଯଥା ଭବିଷ୍ୟତ୍—ପ୍ରତିଷ୍ଠା—କର୍ତ୍ତବ୍ୟ—ନ୍ୟାୟ ।

ତାହାରି ଫାଙ୍କରେ ଥରେ ଥରେ ମନ-ଗହ୍ୱରର ଗୋପନ କଥା ପଦାକୁ ଉଠି ମନକୁ ରଙ୍ଗେଇ ଦିଏ । କେତେବେଳେ କେଉଁ ଭାବ—ଆନନ୍ଦ, ଉଚ୍ଛ୍ୱାସ, ଦୁଃଖ ଅଥବା ଶୂନ୍ୟତା—ଆସି ଚାଲିଯାଏ, ଏଇ ଭାବ କେବଳ ଗୋପନ ସ୍ୱପ୍ନର ପ୍ରକାଶର ରୂପାନ୍ତର ।

ସେଦିନ ସେମିତି—ମହାନଦୀ ଆନିକଟ ପାଖେ ବସୁ ବସୁ ସଞ୍ଜ ବୁଡ଼ି ଆସିଲା । ଦୂର ପାଣି କଳା ପଡ଼ି ଆସିଲା । ଅନ୍ଧାର ଓହ୍ଲେଇଲା ।

ଆକାଶ ଯେମୁଣ୍ଡୁ ଉପରେ ଯେମିତି କଳା କଳା କବାଟଗୁଡ଼ାଏ ପଟ ପଟ କରି କଳ ହୋଇଗଲା ।

ଗୋଟା ଗୋଟା ମେଘ-ଘୋଡ଼ଆ ତଳ ଡାହାଣ ଫାଙ୍କରୁ ଜୁଳୁଜୁଳୁ କରି ଚାହିଁ ରହିଲେ ।

ପୋଲ ଉପରେ ରେଲଗାଡ଼ି ପଡ଼ିଲା । ଚାଲିଗଲା । ସବୁ ଚୁପ୍ ମାରି ଆସିଥାଏ । ମିଳାଇ ଯାଉଥିବା ହାହାକାର ପରି ଅନୁଭୂତ ଖାଲି ଛୁଇ ରହିଥାଏ । ତଳ ଜୁଳୁଜୁଳୁ ଆକାଶ, ଟଳମଳ ଟଳମଳ କାଳିଆ ପାଣି, ଆଉ ବେଣା ପଠା ।

ଖରାପ ଲାଗିଲା, ଲେଉଟିଲି । ସେଦିନ ମୋ'ର ଡେରି ହୋଇ ଯାଇଥାଏ ।

ଏହାପରେ ଦିନେ ସଡ଼କୁ ସଡ଼ ପଣ୍ଡାପାଟା ଆସି ଚାଲିଗଲା । ତା'ପରେ ଦିନାକେତେ ଆସି ଗାଁରେ ରହିଲା ।

ଗାଁ, ଉକୋଳ ଉକୋଳ ଦିନ ଚାଲିଯାଏ ।

ଚଉଦମା ଗାଁର ଚଉଦମା ଗୀତ, କିଛି ମରେ ନାହିଁ, କିଛି ଆରମ୍ଭ ହୁଏ ନାହିଁ, ଅଚଳ ।

ଭୋର୍ ସକାଳେ ବଡ଼ ନାଳ କରେ କରେ ଥରେ ଥରେ ଏକୁଟିଆ ମୁଁ ବୁଲିଯାଏଁ । କଜଳପାତି ଏ ଗଛରୁ ସେ ଗଛ ଉଡ଼ ଉଡ଼ ବୋବାଏ । ଦଣ୍ଡା ଉପରେ ସୂର୍ଯ୍ୟକିରଣ ବାଙ୍କ ହୋଇପଡ଼େ । ଦି' ପାଖରେ ଠାଏ ଠାଏ ଦିଶେ ଏପାଖୁ ସେପାଖ ଖାଲି ବିଲ । କେତେ ଯତ୍ନରେ କେତେ ମଣିଷ ପୁରୁଷ ପୁରୁଷ ଧରି ଏଇ ମାଟିରୁ ଭାତ ଗୋଟାଇଛନ୍ତି, କେତେ ଶତାବ୍ଦୀର କେତେ ମଣିଷଙ୍କ ହାତମୁଠାରେ ପଶି ପୁଣି ତଳ ଉପରେ ଝଡ଼ ପଡ଼ୁଛି— ମୁଠାଏ ମୁଠାଏ ମାଟି ।

ଦିନ ଦି'ପହରରେ ଖରା ଝାଞ୍ଜିରେ ହାଲିଆ ଘାଲିଆ କଦଳୀବାରିକୁ ଚାହିଁ ରହୁ ରହୁ ଛାଇ ବଡ଼ ହୁଏ, ଖରା ନେଉଟେ, ସଞ୍ଜ ବୁଡ଼େ । ପିଣ୍ଡା ପହଣ୍ଡରେ ବସି ଗପୁ ଗପୁ ମାଇପେ ଅଣ୍ଟାପାଣି କରି ଫେରିଆସନ୍ତି । ରାତିରେ ଭାଗବତଘରେ ମୃଦଙ୍ଗ ମାଡ଼ ଶୁଣି ଫେରିଲାବେଳକୁ ଆମ ଦାଣ୍ଡରେ ଅନ୍ଧାର ପୂରି ଯାଇଥାଏ । ତା'ପରେ—ସାଇଁ ସାଇଁ ନିଶା ।

ଗାଁ ମତେ ଭଲପାଏ, ମୁଁ ଗାଁକୁ ଭଲପାଏ ।

କିନ୍ତୁ ବେଳେ ବେଳେ ପଦା ପୃଥିବୀର ଡାକ ଆସି ଆପେ ଆପେ କାନରେ ବାଜେ । ନିଃ. ପ୍ରାଃ. ସ୍କୁଲ ହତାରେ ଶୁଖି ଆସୁଥିବା ଗେଣ୍ଡୁ ବଗିଚାର ଶେଷ ଫୁଲମୁଠିକ ଆଡ଼କୁ ଚାହିଁ ଚାହିଁ ସଞ୍ଜ ବୁଡ଼େ । ଠୋକା ମାଷ୍ଟ୍ରଙ୍କ ସାଙ୍ଗରେ ଅଳସ କଥା ଚପିଲାବେଳେ ମନେପଡ଼ନ୍ତି ବେଳେ ବେଳେ ମନେପଡ଼େ ସହରର କୋଠାଚହଳ, କାଠଯୋଡ଼ି କୂଳର ଉପାସୀ ବନ୍ଧୁମାନେ—ଆଜି—କେତେ ଲୋକ ।

"ଯା ପରେ ପୁଣି କ'ଣ ପଢ଼ିବେ ଆଜ୍ଞା ?"

"ଦେଖାଯାଉ, କିଛି ଠିକ୍ କରିନାହିଁ···"

ଆପଣାକୁ ଭୁଲିଇ ହୁଏନାହିଁ, ଭାବେଁ, ସତେ ତ—!

ସାନ୍ଧ୍ୟ ବୁଲି ବାହାରେ । ଗାଁରେ ମୁଁ ଜଣେ ବଡ଼ଲୋକ । ସବୁ କଥାରେ ଲୋକେ ମତେ ଉପଲକ୍ଷ କରନ୍ତି, ଦେଖ୍ କି କଥା, କି ବୁଦ୍ଧି, ଏତେ ଅଳ୍ପ ବୟସରେ କେତେ ପାଠ ସେ ପଢ଼ିଗଲାଣି ! ବୁଢ଼ୀମାନେ ଆଜି ଅଣ୍ଠା ମଣିଷମାନେ ଖାଲି କହନ୍ତି ବାହାଘର କଥା, କେବେ ହେଉଛି ? କେଉଁଠି, ଇତ୍ୟାଦି । କିଏ ଆଉ ହୋଇ କଥା କହେ, ଖାଲି ବାହାଘର କଥା ।

"ଏଁ ! ସବୁଦିନେ କ'ଣ ଏମିତି ଖାଲି ବସିଥିବେ ନା କ'ଣ ମ ?" କିଏ କହେ, "ହଁ ଲୋ ସୋଦରବୋଉ, ଏମିତି ସମସ୍ତେ ଦିନେ ହେଉଥାନ୍ତି ଲୋ, ଅଧିଆଡ଼ା ଥିଲାବେଳେ । ବାହାସାହା ହୋଇସାରିଲେ—ଆଜି କିଏ କାହାକୁ ପଚାରେ—!"

ପଢାକୁ ଦେଖେଇବାକୁ ଲାଜ ଲାଜ ଲାଗେ, ଭିତରେ ଭିତରେ ସେତେ ଖରାପ ଲାଗେ ନାହିଁ । ଏସବୁ ବାଜେ ଗପ ମଧ୍ୟ ମନକୁ ତୋଷ କରେ । କ୍ରମେ, ଯେତେବେଳେ ସେଇ କଥା ସେଇ କଥା ଖାଲି ଦୋହରେଇ ଦୋହରେଇ ହୋଇ ଲୋକେ ପକାନ୍ତି, ଭାରି ବିରକ୍ତ ଲାଗେ, ମୁଁ ପଳେଇ ପାରିଲେ ବଞ୍ଚେ ।

ଏଣିକି, ସ୍ୱାଠୁ ବେଶି ମୁଁ ବାହାଘର ବିଷୟରେ ଭାବେ ନାହିଁ । ଖାଲି ବସିଲେ ସାମାଜିକ ବନ୍ଧନର ପ୍ରତିକୂଳ ଭଲ ପାଇବାର ସବୁ ରସୁଆଳ ଧାରଣାକୁ ଶୁଖାଇଦିଏ ।

କଳ୍ପନା ଯେନ ଯେ ବଞ୍ଚେ ବାସ୍ତବତାର କୁସୁମ-ଗଣ୍ଡିକୁ ଭାବି ବସିଲେ ତାକୁ ଜଣେ ଯୁଆଳ ।

ଗାଁରେ ସେତ୍କ କେଇଟା ଦିନ ମତେ ବିଶେଷ ଭଲ ଲାଗିଥିଲା ଗାଁ ମଣିଷଙ୍କ ସ୍ନେହ ।

ମଣିଷ କହିଲେ ଦାଢ଼ିଆ ପୁରୋହିତ ମନେପଡ଼ନ୍ତି ନାହିଁ, ଅଥବା ଚୂଟିଆ ବଡ଼ବାପା, ହାଡ଼ହାଡ଼ୁଆ ଜେଜେ । ସେମାନେ ବି ମତେ ଭଲ ପାଉଥିଲେ ।

ପୁରୋହିତଙ୍କର ଦେଖାହେଲେ ତ ଖାଲି ଆଶୀର୍ବାଦ, ପ୍ରଶଂସା । ବୁଢ଼ା ବ୍ରାହ୍ମଣ ଆଞ୍ଜୁଳା ଆଞ୍ଜୁଳା କରି ଆଶୀର୍ବାଦ ଢାଳୁଛି । ସ୍ନେହ ଡଳ-ଡଳ ଆଖିରେ ଶୁଦ୍ଧାଶୁଦ୍ଧ ଭୁଲି ସବୁ ପାଠ ଖୁାଡ଼ଖୁଡ଼ କରି ମନ୍ତ୍ର ପଢ଼ୁଛି । ଦୂବଘାସ ଅରୁଆ ଚାଉଳ ଅଜାଡ଼ୁଛି । ଗୋବିନ୍ଦଜୀଉ ଠାକୁରଙ୍କ ପାଦୁକ ଦେଉଛି ।

ବଡ଼ବାପା ଭାତ ଖାଇଲାବେଳ ହେଲେ ସାଙ୍ଗରେ ଖୋଇବେ ବୋଲି ଖୋଜି ଖୋଜି ରଡ଼ି ଗୁଡ଼ି ଗାଁ ଏ ମୁଣ୍ଡ ସେ ମୁଣ୍ଡ ଖେଦି ଆସିଛନ୍ତି ।

ମୁଁ ବେଇମାନ୍ ନୁହେଁ, ବୁଢ଼ାଦିନେ ପଛକୁ ଚାହିଁଲାବେଳକୁ ସେତ୍କ ବୁଢ଼ାଟିମାନଙ୍କର ମନଖୋଲା ସ୍ନେହ ସ୍ମୃତି ଭିତରେ ଫୁଲପାଖୁଡ଼ା ପରି ମୋ ଉପରେ ଝଡ଼ିପଡ଼ିବାର ମୁଁ ଅନୁଭବ କରୁଛି, ଝୁରୁଛି···

କିନ୍ତୁ ସେତେବେଳେ ସେମାନଙ୍କ ଆଦରଠାରୁ ଭଲ ଲାଗୁଥିଲା ଅପା, ଖୁଡ଼େଇ, ଭାଉଜ, ଭଉଣୀମାନଙ୍କ ଗେହ୍ଲା, ସେମାନଙ୍କ ନିର୍ବୋଧ ଗପ,

ସେମାନଙ୍କ ନିର୍ବୋଧ ପ୍ରଶଂସା, କାହା ହାତର ଶାଗକେଉଁଳ, କାହାଠାରୁ ପାନଖଣ୍ଡେ, କାହାର ପରୀକ୍ଷା, କାହାର ବା ଚର୍ଚ୍ଚା ।

ମା’ ଆଉ ଭଉଣୀ—ମୋ’ର ସ୍ପଷ୍ଟ ଧାରଣା ଭିତରେ ଏମାନେ ଥିଲେ ଆଦରର, ସ୍ନେହର ନିର୍ଝର । ଏମାନଙ୍କୁ ଘିରି ଗାଁ, ସ୍ମୃତିର ପାଇଁ ବନ୍ଧନ ।

ଜାଲଜାଲିଆ ବାଉଁଶବୁଦା ଘେରେଇ ନାଲିକଇଁଫୁଟା ଟଳଟଳ ଗାଁ ପୋଖରୀ, ଗୋଡ଼ରେ ଘଷି ହୋଇ ହୋଇ ପାହାଚ ଯାହାର ଧୋଇ ହୋଇ-ଗଲାଣି । ଛୁଇଁଛୁଇଁଆ ଦଳବନ୍ଧା ଗାଁ ପୋଖରୀ । ଶାନ୍ତ ସ୍ନିଗ୍ଧ ଧୀର । ସବୁସହଣୀ । ତାହାଠେଇଁ ମୋର ମମତା ।

ସେମିତି ସେମାନେ, ମା’ ଆଉ ଭଉଣୀ ।

ଏମାନେ ମିଶି ଗାଁ ।

ସେଇ ପୋଖରୀର କାଳିଆ ପାଣିରେ କେଉଁ କଇଁମନ୍ଦା ତଳେ ପୋତା ହୋଇଛି ମୋର ମଞ୍ଜି, କେତେ ପରସ୍ତ ଫରୁଆ ଭିତରେ, କେଉଁ ଅଣଦେଖା କଳ୍ପନାର ପକ୍ଷୀ ତାକୁ ଜଗି ବସିଛନ୍ତି । ସାତତାଳ ପାଣି ଭିତରେ କେଉଁଠି ସେ ଯାଇଛି ହଜି, ସେମିତିଆକୁ କେନ୍ଦ୍ର କରି ମୋ’ର ମନ ଭଉଁରୀ ଭଉଁରୀ ବୁଲୁଛି···ଖାଲି···ବୁଲୁଛି ।

କିଏ କହେ—“କେତେ ବର୍ଷ ତୁମେ ପଢ଼ିଛ କହ ତ ? ଆମ ଏ ଶୋଇଲାଘରେ ଘରେ ବର୍ଷ ହେବ ?”

ଆଉ କିଏ କହେ—“ବୁଢ଼ୀର ଶେଷ ଆଶା ଅଛି, ତୁ ଚାକିରି ପାଇଲେ ତୋ ସାଙ୍ଗେ ଯାଇ କାଶୀ ବୃନ୍ଦାବନ ଟିକିଏ ବୁଲି ଆସିବ । ମୁଁ କ’ଣ ଅଇଛା ମରୁଛି ? ଭୁଲିବୁ ନାହିଁଟି ହେତେବେଳେ ?”

ମୋ’ଠାରେ କିଏ କେତେ ନିଜ ଆକାଙ୍କ୍ଷାର ସଫଳତା ଖୋଜେ, କେତେ ପ୍ରକାର ବନ୍ଧନା ମୁଁ ପାଏଁ, ଆମ ସେ ଛୋଟିଆ ଗାଁଖଣ୍ଡିକରେ ମୁଁ ଗଢ଼କଟା ଗୌଡ଼-ଶନେତା ।

ତାଙ୍କର ଭଲପାଇବାର ଅମୃତ-ପାଣିରେ ମନ ଫୁଲିଆସେ । ଭଲ-ପାଇବା ଆଉ ମନେ ବାନ୍ଧି ରଖେନାହିଁ, ଦେଖେଁ ମୋ’ର ଭବିଷ୍ୟତ । ବଢ଼ି ବଢ଼ି ମନରେ ଖୋଞ୍ଚା ଲାଗେ, କେଉଁଠି କେତେ କଞ୍ଚା ଶୁଖିଲା କଣ୍ଟା-ଝାଟିର

ବାଡ଼, ଯାହା ସମ୍ଭବ, ସେତିକରେ ଆପଣା ଆପେ ବାନ୍ଧ ହୋଇ ରହି ମନ ଛଟପଟ ହୁଏ । ମୁଁ ଜାଣେ ମୁଁ କ'ଣ । ସେମାନଙ୍କ ଆଖିରେ ମୁଁ ଖୁବ୍ ବଡ଼, କିନ୍ତୁ··· । ମନେପଡ଼େ କିଏ କେତେ କପାଳରେ ଆଖି ଖୋସିଦେଇ ମୋତେ ଚାହୁଁଛି । ଏତେ ପୂଜା, ଅର୍ଘ୍ୟ, ମୁଁ ବଡ଼, ମୁଁ ଖୁବ୍ ବଡ଼···କିନ୍ତୁ-ଫିଲୁ ସବୁ ପାସୋର ପକାଏଁ । ପାପୁଲିରେ ଥୋମଣି ରଖି ଦଣ୍ଡାର କୁନ୍ଦ ଉପରେ ଦୂରକୁ ଚାହିଁ ରହେଁ । ବଡ଼ ବଡ଼ ସହର, କୋଠାବାଡ଼, ରାସ୍ତା, ଗଳି, ସାଲୁବାଲୁ ମଣିଷ, ତାଙ୍କର ଭିତରେ ମୁଁ, ଖୁବ୍ ବଡ଼··· ।

ଦେଖେଁ, ଦରିଆରେ ତେଜ, ଜାହାଜଟିଏ ଚାଲିଛି, ଏତେ ବଡ଼ ଦରିଆରେ ଖଣ୍ଡିଏ ବୋଲି ଜାହାଜ···ମିଣି ଆସିଲା···ଚେମେଣିରୁ ଧୂଆଁ ହିଁ ଖାଲି ରହିଲା । କିଏ ଚାଲିଛି ? ମୁଁ ।

ଗାଈ ଜଗୁଆଳି ଟୋକାଏ ଆମ୍ବଗଛ ତଳେ ବାଗୁଡ଼ି ଖେଳନ୍ତି, ଏକଣିଙ୍ଗା ଟୋକାଟାଏ ଗଛ ଡାଳରୁ ଗୋଡ଼ ଓହଳେଇ ଦେଇ ବଇଁଶୀଟାଏ ଧରି ଫୁଁ ଫାଁ କରେ, ବଜାଏ—'କି ନାମ ବୋଇଲୁ କୁହ ଗୋ ଲଳିତେ—

ଭଲ ଲାଗେ ନାହିଁ । ଶଢମାଢେ । ମଣିଷ ମୁଣ୍ଡ ବ' ଚକଟା କଟି ଦୂରରେ ଗଡ଼ଗଡ଼ୋଉଛି । ବିରକ୍ତ ଲାଗେ । ଏଇ ଗୋଟାଏ ଗୋଟାଏ ମୁଣ୍ଡ, ଖରା ଖାଉଛି, ବର୍ଷା ଖାଉଛି, ଦଣ୍ଡାରେ ପଡ଼ ପଡ଼ ହାଡ଼ଗୁଡ଼ାକ ଚୂନ ଫୁଟି ଆସିଲାଣି । ବଞ୍ଚିବା ଭିତରେ ଖାଲି ଘରୁ ଗମ୍ଭୀର—ଗମ୍ଭୀରରୁ ଘର । କୋଡ଼ିଏ ବର୍ଷ ଗଲା ବା ବଣାଶହେ ବର୍ଷ, ଏକା କଥା ।

ଉଠି ଚାଲିଆସେଁ ।

ମୋ'ର ଆକାଶୀ ଭବିଷ୍ୟତ୍ ଦେହରେ ଲଗିଯାଏ ବୋଝେ ଲେଖାଁ ଗାଁ ଗୋହିରିର ଧୂଳି, ଆଉ ବିଲର ଫଳ ।

ଭାବେଁ ମୁଁ ଏପରି ହେବନାହିଁ, ମନେ ମନେ ବୁଝେଁ, ଆନ ଉପାୟ ନାହିଁ ।

ତେଣୁ ବିରକ୍ତ ଲାଗେ । ଉଠି ଚାଲିଆସେଁ । ଗାଈଜଗା ଟୋକାଏ କୁଛାଟାକୁ ପଛରେ ହସନ୍ତି । ଷଣ୍ଢଟା ଗାରଡ଼େଇ ଗାରଡ଼େଇ ଚାହେଁ । ଗୋଟାଏ ଗୋଟାଏ ଗାଈ ମୁଣ୍ଡ ଟେକି ଚାହାଁନ୍ତି, ପୁଣି ମୁଣ୍ଡ ନୋଇଁ ଘାସ ଚୋବାନ୍ତି ।

ଶୂନ୍‌ଶାନ୍ ଦଣ୍ଡାଟା ପଡ଼ିରହେ । ପଛରେ କଏ ଯେପରି ମତେ ଟାପରା କରୁଛି । ପରାଜୟ୍ ମରମକୁ ବାଧେ, ଦେହ ଜଳେ ।

ଆପଣାର ଆଗ କଥା ଭାବି ଭାବି ଆସେ ।

ଅର୍ଜୁନ ଭାଇଙ୍କ ଦାଣ୍ଡବାଟେ ଆସୁ ଆସୁ ଦେଖେଁ କବାଟଟା ମେଲା ଅଛି । ଅର୍ଜୁନ ଭାଇ ନ ଥିବେ । ଜନ୍ମୁମୁ ଅଜା ଘରେ ସାଙ୍ଗସାଥୀ ନେଇ ପାଲପାଖେ ଡାକୁଥିବେ, "ପୁଅ ବାଆାର" ଡାକ ପଡ଼ୁଥିବ, "ମାର ମାର" । ମନ ଛକପକ ହେଉଛି, କାଳେ ଗୁରୁଜନ ଥିବେ, କହିବେ ଟୋକାଏ ପାଠ ପଢ଼ି କାନ୍ଧରେ ହାତ ପକେଇଲେ ।

ଅର୍ଜୁନ ଭାଇ ନ ଥିବେ । ଗଲେ ତାସ୍ ହ'ହାତ ପଡ଼ିବ । ଭାଉଜ-ବୋଉଙ୍କୁ କବାଟରେ ବାଡ଼େଇ ବାଡ଼େଇ ଉଠାହେବ । ପାନ ମଧ୍ୟ ସରିଛି । ଡାକଟାଏ ମାରି ଦାଣ୍ଡଘରେ ପଶିଯାଏଁ ।

ନଦୁଆ ନଦୁଆ ଆଖି ମିଞ୍ଜି ମିଞ୍ଜି କରି ଅର୍ଜୁନ ଭାଇଙ୍କ ସ୍ତ୍ରୀ ଉଠି ଆସନ୍ତି, କହନ୍ତି, "କହୋ ବାବୁ, ଏତେବେଳଟାରେ କୁଆଡ଼େ ମ ? ନା— ଶୋଇଥିଲ କି ? ତୁଆଟା ତ ଖାଲି ରଟରାଟ କରି ଖାଉଚି, ଶୁଆଇ ଦଉଚି କୋଉଠି ? ବସ ପାନ, ଆଣେ ।"

ଖେଳ ଜମେ, ଖବା ନେଉଟେ । ମୁଁ ଘରକୁ ଫେରେଁ । ମୁଣ୍ଡ ଭିତରେ ଖାଲି ଖାଲି ଲାଗେ, ଯେପରିକି ମୁଣ୍ଡରେ କିଛି ନାହିଁ, ଖାଲି ଫମ୍ପାଟା ।

ଘରକୁ ଆସୁ ଆସୁ ନାହାକଘର ଝିଅ ଦୋ'ଟି, ସେବତୀ ଆଉ ରେବତୀ, ଗେଲରେ ଗେଲରେ ଲାଗୁ ଲାଗୁ କଳକଳିଆ ହୋଇ ଦଉଡ଼ା ଦଉଡ଼ି ହୁଅନ୍ତି । ସେଦିନ ସେବତୀ ଦେଖା ପଡ଼ିଯାଇଥିଲା, ଦାଣ୍ଡରେ ତାଙ୍କ ତଉରମୂଳେ । ଗୋରି ଗୋଲଗାଲ ମୁହଁଟି, ଗୁହାଁଣୀରେ ଦୁଷ୍ଟାମି । ମତେ ଦେଖି ଲୁଗାପଟା ସଜାଡ଼ି କଁ'ଳକହି ମଉନମୁହାଁ ହୋଇ ଠିଆହୋଇ ରହିଥିଲା ।

ଅଧ ଆଉଜା କବାଟ ପଛରେ ଠିଆ ହୋଇଥିଲା ରେବତୀ, କଣେଇ କଣେଇ ଚାହୁଁଥିଲା ।

ସେଦିନ ମୋର ଫାଙ୍କା ମନ ପୂରିଯାଇଥିଲା ।

କେବେ କେବେ ନାଳବନ୍ଧ ପାଖେ, ଗାଁ'ଠୁ ଟିକିଏ ଦୂରରେ— ପୋଲ ଉପରେ ବସି ସେପାଖକୁ ଚାହିଁ ରହିଥାଏ । ନାଳ ଉପରେ କଳା

ପାନଆର କୁନା ପିଠି ପର ଗୋଟାଏ କାଠପୋଲ, ତା' ସେପାଖେ ଖାଲ ଭୂଇଁ—ବାଲିସର—ଗୋଟାଏ ଶୁଖିଲା ନଈ । ନଈବାଲି ଆରପାଖେ ଗାଁଟିଏ ଦିଶେ, ଗାଁର ଧଡ଼ ବାନ୍ଧିଛି ଧାଡ଼ ଧାଡ଼ ଗଛ, ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଘରର ମଥୁଡ଼ ।

ସେଇ ଉଞ୍ଚ ପୋଲ ଉପରେ ବସି ଆଉ ପାଖର ମଲା ନଈ ଉପରେ ସୂର୍ଯ୍ୟାସ୍ତ ଦେଖେଁ । ସେପାଖରୁ ଏପାଖକୁ ଗୋରୁ ଆସନ୍ତି, ମଣିଷ ଆସନ୍ତି । ବୋହୂଙ୍କରୁ ସ୍ୱର ଆସେ, ବାଛୁରିଙ୍କି କାନ୍ଧେଇ ବୋଝିଆ ଆସେ, ବାଲି ଉପରେ ଟୋପା ଟୋପା ଦୃଶ୍ୟ ଦିଶିଯାଏ । ପଶ୍ଚିମପଟେ, ପଛଆଡ଼େ ଅପଳସ ବାଲିକୁଦଗୁଡ଼ାକ, ଯେଉଁଠି ଲମ୍ବଲମ୍ବି ବେଣାଫୁଲର ଜଙ୍ଗଲ ଫିକା ପଡ଼ିଆସେ, ସଞ୍ଜ ବୁଡ଼େ ।

ଅନ୍ୟମନସ୍କ ହୋଇ ବସିଥାଏଁ ।

ମୋ'ର ଗୋଡ଼ ତଳେ ନାଳ ପାଣିରେ ଗଣ୍ଡ ମାଠିଆ ବୁଡ଼ାଇବାର ଭୁମ୍ଭୁସ ଶବ୍ଦରେ ଧ୍ୟାନ ଭାଙ୍ଗିଯାଏ, ଗାଁ ମାଇପେ ପାଣିକି ଗଡ଼ନ୍ତି, ପାଣି ଛଳଛଳ କରଉଠେ, ଜୁକୁ ଜୁକୁ ଚଢ ପାଣିକୁ ଖସନ୍ତି ।

ଗୋଟିଏ ଗୋଟିଏ ହୋଇ ନାଳ ବନ୍ଧେ ବନ୍ଧେ ଘରକୁ ମୁହେଁ ।

ଦ'ବନ୍ଧର ଦ'ଧାଡ଼ ଗଛ ମୁହଁଅନ୍ଧାରରେ କୁମ୍ଭଚାନ ଠିଆହୋଇ ରହିଥାନ୍ତି । ପତ୍ର ହଲେ ନାହିଁ, ପବନ ଥରେ ନାହିଁ, ଅନ୍ଧାର ଟାଣିହୋଇ ରହେ ।

ମନ ଭିତରେ ଗୁଇଁ ପଶିଯାଏ । ଏତେ ବଡ଼ ସୃଷ୍ଟିସାରା ଶୂନ୍ୟତା ଭିତରେ ପୂରିରହିଛି ଯେପରି କପଟ ଗୋଟାଏ ପ୍ରତୀକ୍ଷା । ଏଇ ଶୂନ୍‌ଶାନ୍ ଜନ୍ତୁଆଳରେ ଅକାବକା ହୋଇ ଅନାଇଁ ରହିଛନ୍ତି ଯେପରି କୋଟି କୋଟି ରୂପ, କୋଟି କୋଟି ଆତ୍ମା, ସତେକି ଏ ଗହଳ ଘାରବତା ଭିତରେ କ'ଣ କଣ୍ଟ ଘଟିବ ! ପ୍ରକଟିବ କେଉଁ ଅଜପା ଅଣାକାରଙ୍କ ରହସ୍ୟ, ଧ୍ୱଂସ-ସୃଜନ ମୃତ୍ୟୁ-ଜୀବନର ରହସ୍ୟ, କାଳର ରହସ୍ୟ !

ଯନ୍ତ୍ର ପରି ପଡ଼ିଯାଏ ଧଳା ଗୁମ୍ଫା ଉପରେ ଗୋଟାକ ପରେ ଗୋଟାଏ ହୋଇ ମୋର ପାହୁଲ, ଲୁଚି ରଖିଥିବା ନିଃଶ୍ୱାସ ପରି ପବନରେ ଚିନ୍ତା ଭିତରେ ମିଶିଯାଏ ଦ୍ୱନ୍ଦ୍ୱ ଓ ଆଶଙ୍କା ।

ହଠାତ୍ ପୁନ୍ନାଗ ଗଛ ଖୋଲରୁ ଗୋଟାଏ ଝିଙ୍କାରି ବୋବାଇ ଉଠେ । ତା'ପରେ ଆଉ ଗୋଟାଏ, ତା'ପରେ ଆଉ ଗୋଟାଏ । ତା'ପରେ କେତେ ଛୋଟ ଛୋଟ ଶବ୍ଦ, ଖସ୍ ଖସ୍, ଖଡ୍ ଖଡ୍ । ତା'ପରେ ସବୁ ଠିକ ଶବ୍ଦକୁ ପଛରେ ପକାଇ ଶୁଭେ ଗାଁ ଦେଉଳର ସଞ୍ଜ ଆରତି, ବାଜଣା, ଘଣ୍ଟା, ମାଦଳ, ଝାଞ୍ଜ । ବିରାଟ ଆକାଶ ତଳେ ଖୋଲା କ୍ଷେତ ଆଉ ଗାଁ ଉପରେ ଶବ୍ଦର ଲହଡ଼ି ମାଡ଼ିଯାଏ, କେତେ ମନ୍ଦିରରେ କେତେ ଆରତି ।

ଗାଁକୁ ଗାଁ ଗାଁକୁ ଗାଁ···

ଏଇ କ'ଣ ପ୍ରତୀକ୍ଷାର ଉତ୍ତର ?

ମୁଣ୍ଡ ନଇଁପଡ଼େ, ଅନ୍ଧାର ଭିତରେ କୋଟି କୋଟି ମଣିଷଙ୍କ କୋଟି କୋଟି ଆତ୍ମା ଏକେଳକ ଗଅଁଠାଳ ପଡ଼ି ନଇଁପଡ଼େ, ଅନ୍ଧାର ଶକ୍ତିର ଅନ୍ଧାର ପ୍ରକାଶ ଆଗରେ ।

କ୍ରମେ ସ୍ମୃତିର ଭାବ କଟିଯାଏ, ଆସେ ଗତି, ଆଉ ଆସେ ଉଲ୍ଲାସର ହିଲ୍ଲୋଳ ।

ପବନ ବହେ । ଜହ୍ନ ଉଏଁ । ଖଣ୍ଡ ଖଣ୍ଡ ବଉଦ ଭାସିଯାଏ ହଲୁଥିବା ନଡ଼ିଆପତ୍ରର ଥରିଲା ଥରିଲା ଲମ୍ବ ଆଙ୍ଗୁଠିରେ ଜହ୍ନ ଆଲୁଅ ଝିଲି ଝିଲି ହେଲେ, ଠାଏ ଠାଏ ଧଳା-କଳା, ଧଳା-କଳା ଗୁପିଗୁପିକା ହୋଇଯାଏ ।

ସବୁ ଚିନ୍ତା ସବୁ କ୍ଷୋଭ କିଏ ପରିଷ୍କାର କରି ପୋଛିନିଏ, ଅନୁଭୂତି ଜଡ଼ିତ ହୋଇଆସେ, କେବଳ ରହେ ସ୍ପନ୍ଦନ ।

ଅଶବ୍ଦ, ଅରୂପ, ଅବ୍ୟୟ, ବିସ୍ତୃତ ପର୍ବତ ସମତାଳ ରଖି କେବଳ ସ୍ପନ୍ଦନ···।

ଗାଁ—ସୁନ୍ଦର ଗାଁ—ମା' ଭଉଣୀ ଭାଉଜଙ୍କ ଗାଁ—ଗମ୍ଭୀର ପ୍ରକୃତିର ଗାଁ, ଭାବର ଢେଉ ଓଦା ପ୍ରକୃତିରେ ସୁଷ୍ମା ଫୁଟିଉଠେ, ବିଲରେ, ବଣରେ । ମନର ସବୁ କ୍ଷତ ପାଇଁ ଏଠି ଅଞ୍ଜନ ଅଛି, ଆଉ ଅଛି ସବୁ ମୂଷାଙ୍କ ପାଇଁ ଗୀତ—

ଶ୍ରାନ୍ତ ମୁହୂର୍ତ୍ତର ଲୋକେ ମନେପଡ଼ନ୍ତି, ରେଣୁକା ମନେପଡ଼େ, ଉଦାସ ଲାଗେ, ପୁଣି ଆକାଙ୍କ୍ଷା ବଢ଼େ, ଛଟପଟ ହୁଏ ।

ପୁଣି କେତେ ନୂଆ ଖେଳ ଭିତରେ ସମସ୍ତ କଟିଯାଏ ।

ମୋ'ର ବିଭାଘରର ସମ୍ବନ୍ଧ ସବୁ ଆସିଲାଣି । ଲୋକେ ଝୁପୁରୁ-ଝାପୁରୁ ହେଲେଣି । ଭଲ ହେବ କି ମନ୍ଦ ହେବ ଭାବି ନିଜ ଭିତରେ ମତ କଷାକଷି ହୋଇ କଳିଆ କଲେଣି । ଶୁଣିବାକୁ ମତେ କୌତୁକ ଲାଗୁଛି, କାହିଁକି ନା ମୁଁ ଭଲକରି ଜାଣେ ଯେ ଏଠି ମୋ' ବିଭାଘର ହେବ ନାହିଁ ।

କିନ୍ତୁ ସମ୍ଭବତଃ ସାମାନ୍ୟ ଭାବରେ ରହିଛି ଓ ତେଣୁ ଆଗ୍ରହ ଆସୁଛି ।

ଆମ ଗାଁଠୁ ଦଣ୍ଡାଏ ଦଣ୍ଡାଏ ଦେଢ଼ମାଇଲ ଗଲେ ବୈଁକୋଳଶ୍ୱରୀଙ୍କ ମଠର ଡାକେ ବାଟ ଥାଇ ଯେଉଁ ବଡ଼ ପୋଖରୀଟି ପଡ଼େ, ତାହାର ଉପରେ କାଳୁଗୋଇଙ୍କ ଘର । ବାଟରେ ଗଲେ ଆଖିରେ ପଡ଼ିବ ଗୋଟାଏ ବଡ଼ ବାଡ଼, ତହିଁରେ ସୁଧାତମାନ ଫୁଟେ । ଚେଣିଚମ୍ପା ଫୁଟେ, ସୁନ୍ଦର ପାଞ୍ଚଟା ଝଙ୍କା ଝଙ୍କା କୃଷ୍ଣଚୂଡ଼ା ଗଛରେ ଫୁଲ ନଇହୋଇ ପଡ଼େ ।

ବାଡ଼ କଡକେ ପୋଖରୀ ଲାଗିଛି । ପୋଖରୀରେ ସଡ଼କ କଡ଼କୁ ଗୋଟାଏ ପୁରୁଣା ବରଗଛ । ତାହା ତଳେ ଗୁଡ଼ାଏ ଭଙ୍ଗା ପାହାଚ ଓ ଗୋଟାଏ ଘ୍ରେଟ ଭଙ୍ଗା ଦେଉଳ, ଯାହାର ପ୍ରତି ପଥରକୁ ବରଗଛର ଚେର ଯାକି ଧରିଛି । ଆରପାଖେ କାନୁଗୋଇଙ୍କ ଘର ଭୁଠ ।

ଏଇ ବରଗଛମୂଳେ ଖଣ୍ଡେ ପୁରୁଣା ଭଙ୍ଗା ଦୋକାନ ଘର, ଯେଉଁଠି ମୋ' ଦେଖନ୍ତରେ କେବେ ଦୋକାନ ବସି ନାହିଁ । ଠାଏ ଠାଏ ଫଟା କାନ୍ଥ ଏପାଖ ସେପାଖ ଝୁଡ଼ିପଡ଼ୁଛି, ତଥାପି ଘରଟା ସେଠି ଥିଲା ।

ପିଲାବେଳେ ଥରେ ଥରେ ଇସ୍କୁଲ-ଛୁଟିଆ ଦଣ୍ଡାଏ ଦଣ୍ଡାଏ ଭୂଇଁବରକୋଳି, ଭଇଁଅଁକୋଳି ଖୋଜାଖୋଜା ଭୁଲାଆସି ଏଇ ଗୋଟିକିଆ ଭଙ୍ଗା ଦୋକାନ ଘରେ ଆମେ ଝାଳ ମାରୁଚୁଁ, ପୋଖରୀ ଭିତରକୁ ଝୁଙ୍କି ପଡ଼ିଥିବା ବରଗଛ ସିଅ ଉପରେ ଚଢ଼ିଛୁ ଓ ଆରପାରିକୁ ଚାହିଁଛୁ । ପାଣିକୁଅ ଉଡ଼ିବେଇ ଚୂବେଇ ହୋଇ ପୋଖରୀସାରା ବୁଲୁଥାଏ । ବରଷଣା ପାଣି ସୁଅରେ କାଗଜ ଡଙ୍ଗା ପରି ମାଳ ମାଳ ରାଜହଂସ ଓ ବତକ ଭାସି-ଭାସିକା ଭୁଲିଯାଆନ୍ତି । ଆମେ ଅଣ୍ଟିରୁ କୋଳି କାଢ଼ି ଖାଉଥାଉଁ, ଦେଖୁଥାଉଁ, କେହି ସେତେବେଳେ ଆମକୁ ବିଶେଷ ବାଧା ଦେଉନାହିଁ ।

କାନୁଗୋଇ ଘର କଥା ମନେପଡ଼ିଲେ, ତାଙ୍କ ଘରର ବଡ଼ ବାରିଟା ମନେପଡ଼େ, ଦିଶିଯାଏ କେତେ ଲୋକ ଆସୁଥିଲେ ଆରପାରି ପାହାଚବାଟେ ପୋଖରୀକୁ । ଥରେ ଥରେ ଦିଶେ, ତାମଜାନ୍‌ରେ ଚଢ଼ି ଜଣେ ଥଲ୍‌ଥଲପେଟା ବୁଢ଼ା ଘର ଦୁଆରମୁହଁରୁ ଭୁଲିଯାଆନ୍ତି । କେତେବେଳେ ତାମଜାନ୍‌ରୁ ଓହ୍ଲାଇ ପିଣ୍ଡାକୁ ଚଢ଼ନ୍ତି । ମନେପଡ଼ୁଛି, କେବେ ଦେଖିଥିଲି ଜଣେ ଭୁରିଜଣ ଭେଣ୍ଡା ଟୋକା, ମୁଣ୍ଡରେ ଝିଲପି ବାଳ—ବଡ଼ ଫୁର୍କି-ଫୁର୍କି ସେ ଘରଆଡ଼ୁ ଆସନ୍ତି, ପୋଖରୀ ପଶ୍ଚିମପଟ ପଡ଼ିଆରେ ଗୋଟାଏ ଧଳାଖିଆ ଘୋଡ଼ା ପଛରେ ଗୋଡ଼ାଗୋଡ଼ି ହୁଅନ୍ତି ।

ସମ୍ବନ୍ଧ ଶୁଣି ଦାଣ୍ଡଘରେ ବଡ଼ବାପା ମୂଳହୁଁ ମୁହଁ ମୋଡ଼ିଦେଲେ, "କ'ଣ ଦେବେ ସେମାନେ ? ରଘୁ ଦାସ ମହାଜନ ତ ସବୁ ନିଲାମ କରେଇ ନେଇଛି, କ'ଣ ଅଛି ଯେ ! ଖାଲି ନାଁଟା ସିନା—"

ମଧ୍ୟସ୍ଥ କହିଲେ—"ଦେବେ ନାହିଁ ! ଏଇ ଶେଷ ଜମିଓ ତାଙ୍କର, ଆଉ କାହା ପାଇଁ ରଖିବେ ? ଆଗ ମେଳକ ଖୁଆଁଖୁଣ୍ଟି ସରଯାଉ ।"

ଉହାଡ଼ରେ ରହି ସବୁ ଶୁଣିଲି । ତେବେ କ'ଣ ଆଉ ପୋଖରୀ କୂଳରେ ଗହଳ ଚହଳ ଏବେ ନ ଥିବ । ଚାମଜାନ୍‌କୁ ଜାଇ ଖାଇବଣି ହୁଏତ, ହୁଏତ ପୋଖରୀରେ ଦଳ ଭର୍ତ୍ତି ଯିବଣି । ଶୁଖି ଶୁଖି ନେଳ ବେଙ୍ଗଫୁଲ ପାଣିରେ ବଢ଼ୁଛି ବନ୍ଧ ଦଳ !

କୃଷ୍ଣଚୂଡ଼ା ଗଛ କଟାହୋଇ ସାରିବଣି କି !

ଖାଲି ଇଚ୍ଛା ହେଲା ମଧ୍ୟସ୍ଥଙ୍କୁ ଡାକିନେଇ ତାଙ୍କୁ ଦି'ଟା କଥା ପଚାରେଁ । କିନ୍ତୁ ତା' ତ ସମ୍ଭବ ନୁହେଁ । ମନର ପ୍ରଶ୍ନ ମନରେ ରହିଲା । କାନ୍ଥୁଗୋଇ ଘରର ଦୁର୍ଦ୍ଦିନ ଆସିଛି । ଘର ପଡ଼ିଯାଇଛି ।

ତହିଁରେ ସେ ପାଞ୍ଚୀଟି, ନାଁଟି କାଞ୍ଚନମାଳା ?

ସହାନୁଭୂତି ଆସିଲା । କବି ହୋଇଥିଲେ ଗୋଟିଏ ଶ୍ରେଷ୍ଠ ପଦ୍ୟ ଲେଖିଥାନ୍ତି—କେତେ କଥା ତା' ବିଷୟରେ ମୁଁ ଅନୁମାନ କରିନେଲି ।

ଢଳ ଢଳ କରୁଣ ଗମ୍ଭୀର ଗୁହାଁଣୀ, କେଶର ମେଘ ଉଡ଼ାଳରୁ ଚନ୍ଦ୍ରମା ପରି ମୁହଁ, ପଡ଼ିଯାଇଥିବା କାନ୍ଥୁଗୋଇ ଘରର ଝିଅ କାଞ୍ଚନମାଳା ।

ଇତି ଶ୍ରୀ......

ଘରେ ପସନ୍ଦ କଲେ ନାହିଁ, କଏ ବୁଝେଁ ବୁଡ଼ିଥିବା ସୂର୍ଯ୍ୟ ସହିତ ସମ୍ବନ୍ଧ ଥାପିବାକୁ ? ବୋଉ ଟିକିଏ ଦୋଦୋ ପାଞ୍ଚ ହେଉଥାଏ, କହୁଥାଏ, "ମୁଁ ଦେଖିଛି ତାକୁ, ସେ ଭଲ ପିଲାଟିଏ ।"

ଅଦେଖା କାଞ୍ଚନମାଳାର ସ୍ମୃତି ମନରେ ସୌରଭ ଉଡ଼ାଇ-ଦେଲା । ସ୍ୱପ୍ନ ଗଢ଼ିଲି, କିନ୍ତୁ ଇଚ୍ଛାର ଡେମ ବେଶି ଦୂରକୁ ମେଲି ପାରିଲା ନାହିଁ । ଭଲ ପାଇବା ଜୁଆରରେ ଭଟ୍ଟା ପଡ଼େ—ଯେବେ ଖାଉବ ବାଘଘର କଥା ।

ସ୍ୱାଦ—ବନ୍ଧନ—ଘୋରଡେଇ ପୋରଡେଇ ବନ୍ଧାଗଡ—
ଉଠୁପଡ଼ ତିନିଗୋଡ଼ିଆ ଦଉଡ଼—କାନ୍ଧରେ ଜୁଆଳି, ମୁହଁରେ ଲଗାମ···
ଅପାଠୋଇ କନ୍ଧଖୋର ଝିଅ, ଅକୁହାର, ଅବୁଝା ।

···ସ୍ୱାଦ !

ବଡ଼ ଝଟର ଲାଗୁଥିଲା । ରେଣୁକା ପାଖକୁ ଚିଠି ଲେଖିଲାବେଳେ ଚିଠି ଅଧରେ ହାତ ଅଟକିଯାଏ । କ'ଣ ଲେଖିବି ? ଥାଉ ପରେ ଲେଖିବି । ଭାଉଜ ଚିଠି ଦେଲେଣି "ଆସ"—ଜବାବ୍ ଲେଖିପାରେ ନାହିଁ । ମାଣ୍ଡେଇ ମାଣ୍ଡେଇ ଦିନ ଯାଏ ।

ଭାବୁଥିଲି, ମଫସଲରେ ପଡ଼ି ପଡ଼ି ମୁଁ ଅଳସୁଆ ହୋଇଯାଇଛି ।

କିନ୍ତୁ ନା, ଅଳସୁଆ ନୁହେଁ । ଗବସ୍ତ ଗାଁରେ ସତାର୍ ମିଆଁ ଗୋଟିଏ ନିରକ୍ଷରତା-ନିବାରଣୀ ସମିତି ଖୋଲୁଛନ୍ତି, ଆଉ ମଧ୍ୟ ସେଠି ସୂତା କଟା ହେଉଛି ଓ ସ୍ଲେଟ ହୋଇ ଗୋଟିଏ ଗ୍ରାମ ସଙ୍ଗଠନ ଉଦ୍ୟମ ହେଉଛି । ଅନେକ ଥର ସାଇକେଲ ଚଢ଼ି ମୁଁ ସେଠିକୁ ଗଲିଣି । ଦଣ୍ଡାଏ ଦଣ୍ଡାଏ କାଳୁଗୋଇ ଦର ଖଜା-ଖଣି ପୋଖରୀବାଟେ ଗବସ୍ତ ଗାଁ ଗୋବ୍ରଖିକୁ ସାଇକେଲ ମଡ଼ାଇ ନିଏଁ, ପୋଖରୀ ପାଖ ହେଲାବେଳକୁ ସାଇଁ କରି ସାଇକେଲ ଚଳାଇ ନିଏଁ, ଖାଲି ଟେଙ୍କ ଆପେ ଆପେ ଗୋଡ଼ ଝ'ଟା ଉଠେ ପଡ଼େ···

ଅଳସୁଆ ମୁଁ ନୁହେଁ; କିନ୍ତୁ ଚିଠି ଲେଖିଲାବେଳକୁ କିଛି ମନେ-ପଡ଼େ ନାହିଁ । ଭାବେ, ସୁନ୍ଦର କରି ଭାବପ୍ରବଣ ଲେଖିବି କାଲି ।

ଦିନେ ଚୋଟା ଭିତରେ ସେ ମଧ୍ୟସ୍ଥ ବୁଢ଼ାକୁ ଦେଖିଥିଲି । କାଖରେ ବସ୍ତାନିଟିଏ ଜାକି ଗୁଆ ଭାଙ୍ଗି ଭାଙ୍ଗି ବୁଲୁଥିଲେ ସେ । ତା'ପରେ ଆଜି ମୁଁ ଗବସ୍ତ ଯାଇନାହିଁ ।

ଜାଗର ଅମାବାସ୍ୟାକୁ ବୈଂକୋଳୀଶ୍ୱରଙ୍କ ମନ୍ଦିରରେ ବଡ଼ ଯାତ୍ରା ହୁଏ । ସଞ୍ଜ ବୁଡ଼ୁ ବୁଡ଼ୁ ଲୋକେ ଚାଲିଲେ, ଠେଙ୍ଗାବାଡ଼ ଧରି ମିଣିପେ, କାନ ଧସ୍ୱଧସି ହୋଇ ନାଳ, ବାଇଗଣୀ ଲୁଗା ସବୁ ପିନ୍ଧି ମାଇପେ । ଦୂରରୁ ଦୂରରୁ ବଳଦଗାଡ଼ି ଉପରେ ଓଦରରେ ଖୁନ୍ଦାଖାନ୍ଦି ହୋଇ ପଣି ମାଇପେ ଆସିଥାନ୍ତି ।

ଘରେ ବୋଉହେଲିକା ଗ ଧରିଲେ, "ଯିବା"; ତେଣୁ ବଳଦଗାଡ଼ି ପଛେ ପଛେ ଆମେ ସବୁ ସେମାନଙ୍କ ସାଙ୍ଗରେ ଗଲୁ ।

ମହାଦୀପ ଉଠିବାର କିଛି ସମୟ ପୂର୍ବରୁ ବେଢ଼ା ଉପରେ ବୋଉହେଲିକା ବୁଲୁଛନ୍ତି । ମୁଁ ପଛରେ ରହି ଏପାଖ ସେପାଖ ଚାହିଁ ଚାହିଁ ଆସୁଛି । ଦେଖିଲି ବୋଉହେଲିକାଙ୍କ ଦଳ ଆଉ ଗୋଟିଏ ଦଳ ସାଙ୍ଗେ ମିଶିଲେ ।

ଆଉ ଦଳକୁ ମୁଁ ସେତେ ନିଘା ଦେଇ ନ ଥାଏଁ, ଯେତେ ଦେଇଥାଏଁ ତହିଁରୁ ଜଣକୁ । ସେ ଆକୃତିରେ ଶ୍ରେଷ୍ଠ । ନୂଆ ଫେସନରେ ପାରସୀ ଗଣ୍ଠିରେ ଖଣ୍ଡେ ଜର୍ଜେଟ ଶାଢ଼ୀ ପିନ୍ଧିଥାଏ । ମୁଁ ତା'ର ମୁହଁକୁ ଦେଖିଛି । ପିଲିକିଆ, ଶାନ୍ତ । ଅଳ୍ପ ବୟସ, ନିର୍ବୋଧ ମୁହଁ, ହୁଏତ ସେ ଯଦି ଜର୍ଜେଟ ଶାଢ଼ୀ ପିନ୍ଧି ନ ଥାନ୍ତା ମୁଁ ତାକୁ ମୋଟେ ଅନାଇଁ ନ ଥାନ୍ତି, କିନ୍ତୁ ଚାହିଁସାରି ଦେଖିଲି, ବିଶିଷ୍ଟ ଥିଲି ତା'ର ଗତି ଲଳିତ, କିନ୍ତୁ ସଂଯତ । ଧାଡ଼ି ଧାଡ଼ି ଘିଅଦୀପ ଆଲୁଅରେ ତା'ର ମୁହଁଟି ସୁନ୍ଦର ଦିଶୁଥାଏ । ବେଣୀ ଗୋଟିଏ ଲୁହେଁ, କାଟଟି ଉଳି, ଧାରି ମୁହଁଟିଏ ।

ଆଗକୁ ଚାଲିଯାଇଥାନ୍ତି, କିନ୍ତୁ ହଠାତ୍ ଦୁଇ ଦଳ ଛନ୍ଦାପରିଚ ହେଲେ—ମାଇପେ କିପରି ଏତେ ଚଞ୍ଚଳ ଛନ୍ଦାପରିଚ ହୁଅନ୍ତି ସେମାନଙ୍କୁ ଜଣା—ଝିଅଟି ଉଢ଼ୁଣା ଟାଣି ଝାଉଁଳି ପଡ଼ିଲା । ଏ ପାଖରୁ କେତେ ଲୋକ ଯାଇ ତାକୁ କୁଣ୍ଢାକୁଣ୍ଢି କରି ଗେଲି ଆରମ୍ଭ କରିଦେଲେ—ସେପାଖରୁ ଦୃଷ୍ଟି ପଡ଼ିଲା ପଛକୁ, ମୋତେ ଖୋଜିଲା ପରି । କାନରେ ଥରେ ଅଧେ 'କଞ୍ଚନ' 'କଞ୍ଚନ' ବୋଲି ନାଁଟା ବାଜିଗଲା । ବୁଲିପଡ଼ି ପଛକୁ ଚାହିଁଚାହିଁକା ଚାଲିଆସିଲି ।

ଘରେ ଥଟ୍ଟା ମଣିଷମାନେ ଖୋଳେଇ ଖୋଳେଇ ପଚାରିଲେ, "କେମିତି ଲାଗିଲା ? ଦେଖିଲଟିକି ?" ବାର ପ୍ରକାରେ କଥା ଲଦିହେଲେ

ପ୍ରମାଣ କଲି ଯେ ମୁଁ ଦେଖି ନାହିଁ । ବୋଉ ସ୍ୱାଙ୍କୁ ପଚାରିବସେ, "ହଇ ଗୋ, ବୋହୂ ନାଁକରା କ'ଣ ହବ ?"

ଚାରି ଲୋକେ କଥା ଭିତରେ ମୁଣ୍ଡ ଗଳାନ୍ତି, ଉପହାସ ଲଗାନ୍ତି । ସବୁ ଶୁଣେଁ । କ୍ରମେ ଘଟଣା ଘଷରା ହୋଇ ଆସେ ।

ବିବାହ ବିଷୟରେ ଭାବେଁ, ଭାବି ଭାବି ଅନ୍ତ ପାଏ ନାହିଁ । ବିସ୍ମୟ-ବାର ଜଣା ସ୍ୱପ୍ନମୟ ଉନ୍ମାଦନାଠାରୁ ବଳପଡ଼େ । ମୁଁ ନିକତି ପକାଇ ତଉଲେଁ । କ୍ରମେ ବିରୋଧୀ ଚିନ୍ତାଗୁଡ଼ାକ ଆଗୁଆଳ ହୋଇ ଠିଆହୁଏ । ଅସମ୍ଭବ, ମୁଁ ପ୍ରସ୍ତୁତ ନୁହେଁ । ନିଜେ ନିଜର ପେଟ ପୋଷି ପାରିନାହିଁ । ତହିଁରେ ପୁଣି ଆଉରି ବୋଝ ! ଏତେ ଚଞ୍ଚଳ ବିଭାହେବା ମୂର୍ଖତା । ବୋଉ କହେ, ଲୋକେ କହନ୍ତି, ସେମାନେ ସେପରି କହୁଥାନ୍ତି, କଅଁଳ ସଅଁଳ ବେଳେ ସମସ୍ତେ । ଭାଉଁ ବେଳକୁ କେହି ନାହିଁ ।

କାଞ୍ଚନମାଳା ଆଉ ମୋ'ର ସ୍ୱପ୍ନଗଢ଼ା ନାରୀମୂର୍ତ୍ତି ନୁହେଁ । ମୁଁ ତାକୁ ଦେଖିଛି । ବାସ୍ତବତା ଆଦର୍ଶର ବୁଢ଼ିଆଣୀ ଜାଲ ଭିତରେ ଧରା ଦେଇନାହିଁ, ବରଂ ଜାଲକୁ କାଟି ତଳେ ପଡ଼ିଯାଇଛି ।

ଆକାରରେ ଏଡ଼ିକ ଟିକିଏ ବୋଲି । ନୁହେଁ—ବେଶି ଗୋରା, ସାଧାରଣ ଝିଅଟିଏ ସେ, ସେ କିଁ ଜାଣିବ ମୋ'ର ହୃଦୟ-ବୋଝେଇ ପ୍ରେମର ଅର୍ଘ୍ୟ ! (ଦେଶରେ କେତେ ଝିଅ ଅଛନ୍ତି । କ'ଣ ତାର ବିଶେଷତ୍ୱ ?)

ଖାଲି ଗୋଟାଏ ରକ୍ତମାଂସର ଖେଳଣା କଣ୍ଢେଇ ।

ଲୋକଙ୍କର ପୁଣି ପୁଣି ଆଲୋଚନାରେ ମୋ'ର ହାଡ଼ ଜଳେ । କିନ୍ତୁ ଲୋକେ କହନ୍ତି, ବିଶେଷତଃ ବୁଢ଼ାବୁଢ଼ୀମାନେ, କାରଣ ଏଇ ସାଧାରଣ ଆଲୋଚନା ବାଟେ ତାଙ୍କର ନିଭୃତ ପ୍ରବଣତା ଝଙ୍କାର ଉଠେ !

ଆଜି ଭାବୁଛି, କ'ଣ ବା କ୍ଷତି ହୋଇଥାନ୍ତା ତାକୁ ବିଭା ହୋଇ-ଥିଲେ ? ସମସ୍ତେ ତ ସମାନ !

ଭାବୁଛି, ଯାହା ଅଜଣା ଅଛପା ସେହି ଆମର କବିତା, ଜଣାଶୁଣା ପ୍ରକୃତ କଥାରେ କବିତା ହଜିଯାଏ । ସ୍ଥୂଳ ପ୍ରକୃତ ବସ୍ତୁର ଭିତରେ ଯେତିକି କବିତା ସମ୍ଭବେ ତାକୁ ମଣିଷ ଅବହେଳା କରେ, କାରଣ ମଣିଷ ଖୋଜେଁ

'ନଘେନା', କବତା' ଅର୍ଥାତ୍ ମଣିଷ କ'ଣ ଖୋଜେ ତା' ନଜେ ବୁଝିପାରେ ନାହିଁ, କନ୍ତୁ ଯାହା ପାଏ ତାକୁ ପାଦଙ୍କରେ ପକାଏ ନାହିଁ ।

ଆଜ ଭାବୁଛି, ଶେଷରେ କବତା ହିଁ ମିଳେ ନାହିଁ, ବାଧ୍ୟ ହୋଇ ମଣିଷ ନଜ ମନକୁ ପ୍ରବର୍ତ୍ତାଏ ଯେ ଏଇ ମୋ'ର କବତା—ଶ୍ରେଷ୍ଠ କବତା—ଜୀବନର ଈପ୍‌ସିତ ଅଭୀଷ୍ଟ ଆଦର୍ଶ—ଏଇ ଏତକ ଯାହା ମିଳଲ ସେଇଆ ।

ଯଦ ମୁଁ ତାକୁ ଦେଖି ନ ଥାନ୍ତ ତେବେ କ'ଣ ହୋଇଥାନ୍ତା ଜାଣେ ନାହିଁ । କନ୍ତୁ ଦେଖିପକାଇଲ ଯେ ! ସେ ସୁନ୍ଦର, କନ୍ତୁ ମୋର ଦେଖିବା ହିଁ ଆଣିଦେଲ ବସ୍ତୁ ଓ ସୀମା ଭତ୍ତ୍ଵରେ ମୋର ବଦ୍ରୋହ ।

ମୁଁ ନାହିଁ କଲନାହିଁ, କନ୍ତୁ ବାରମ୍ବାର କହଲ ଯେ ସବୁ ବଡ଼ ହଠାତ୍ ହଠାତ୍ ଲାଗୁଛି ଓ ମୁଁ ଏତେ ଚଞ୍ଚଳ ବଭ ହେବାକୁ ଅନଚ୍ଛୁକ ।

ମନର ତଳେ ତଳେ ବଦ୍ରୋହ କୁହୁଳଉଠେ—ସାତ ସାଗରେ ସାର ଏତେ ବଡ଼ ଯେଉଁ ପ୍ରେୟସୀ—ଆଦର୍ଶ ଏଇ କ'ଣ ସେ ? ଏଇ କାଞ୍ଚନମାଳା ! ଏଇ ପ୍ରଥମ ସମ୍ବନ୍ଧ ଆସୁଁ ଆସୁଁ କ'ଣ ତା'ର ସନ୍ଧାନ ମିଳଗଲ ? ଏତେ ଶୀଘ୍ର ?

ଭବଷ୍ୟତକୁ ଚାହେଁ, ମୋ'ର ଭବଷ୍ୟତ୍, ଯାହାକୁ ମୁଁ ଦେଖିଛି ଅନ୍ଧାର ଗୁମ୍ଫା ଭତରେ ଥାଇ ବାହାରର ପ୍ରଭାତ ପୃଥିବୀକୁ ଦେଖିଲା ପର, କାଞ୍ଚନମାଳା କେବଳ ପାଖର ଝରଣା । ସେଠି ଦୃଷ୍ଟି ଭଗ ହଏ, କନ୍ତୁ ଅଟକ ରହେ ନାହିଁ ।

କାହିଁକ ଏହପର ନଜର ମନଗଢ଼ା ସ୍ୱପ୍ନକୁ ନଜର ହିଁ ଇନ୍ଦ୍ରିୟ ଅନୁଭୂତ ନର୍ଦ୍ଦୟଭାବେ ଭାଙ୍ଗିଦଏ ?

ବେଳେ ବେଳେ କାଞ୍ଚନମାଳାକୁ ମନେ ମନେ ଭଲପାଇ ଭାବେଁ, ସେ ସୁନ୍ଦର, ସେ କଅଁଳ ।

ବବାହର କଥା ପଡ଼ଲେ ତାକୁ ପଛରେ ପକାଇ ମୁଁ ଆଗକୁ ମାଡ଼େଁ ନା ନା—'କେବଳ' ଏତକ ନୁହେଁ, ମନର ଶୋଷ ମେଣ୍ଟିବ ନାହିଁ ଏତକରେ ।

ଆଦର୍ଶକୁ ଫମ୍ପାଣ୍ଟି କରାଇଦେଲେ ପ୍ରାଣକୁ ବାଧେ ।

ଦେଖିଲେ, ଜାଣିଲେ, ଅନ୍ୟକୁ ବର୍ଣ୍ଣନା କରିହୁଏ 'କେବଳ' 'କେବଳ'ରେ, ଏ କେବଳ ଏତିକି, ଯାହାଠୁ ବେଶି ନୁହେଁ, ତେଣୁ ଦେଖା ପରଖାଠାରୁ ଅଦେଖାର ମୋହ ବେଶି ।

ହୁଏତ ଶବ୍ଦ ପାଇଲେ 'କେବଳ' 'କେବଳ' ଧାରଣା ଲୋପପାଏ, କିନ୍ତୁ ନିରାକାର ସମ୍ବିତ ଆକାରର ସାନିଧ୍ୟ ସହଜରେ ଆସେ ନାହିଁ—ଆସେ ନାହିଁ ଏତେ ହଠାତ୍ । ବିଶେଷରେ ତରୁଣର ଶୋଷୀ ମନରେ ।

ରେଣୁ ପାଖକୁ ଚିଠି ଲେଖିବାକୁ ବେଳ ପାଇଲି—

"କଲ୍ୟାଣୀୟା ରେ—ବହୁଦିନୁଁ ଚିଠି ଲେଖିନାହୁଁ, ଏତେ କି ମଝିରେ ଯୁଗଟାଏ ବିତିଗଲିଣି ।"

ଭାଉଜଙ୍କ ପାଖରୁ ଖଣ୍ଡେ ଚିଠି ପାଇଲି—

"ରାଧୁ, ରାଗିଛ କି ? ଚିଠି କାହିଁକି ମୋତେ ଆଉ ଦଉନା ? ଅଭାଗିନୀ ଭାଉଜକୁ ଏତେ ଚଞ୍ଚଳ ପାସୋରି ପକାଇଲ ? ଦୁନିଆଟା ଏହିପରି ।

ମୁଁ ବଡ଼ ଆଶା କରିଥିଲି, ରାଧୁଙ୍କ ପରୀକ୍ଷା ସରିଲା, ଏଥର ଆସିବେ । ଖରାବେଳେ ଏକୁଟିଆ ପଡ଼ି ପଡ଼ି ଏଣୁତେଣୁ ଗୁଡ଼ାଏ ଖାଲି ଭାବେ, ତୁମର ଗରଜ ପଡ଼ିଛି ଆସିବ !

ମୁଁ ତୁମମାନଙ୍କ କଥା ଭାବେଁ କି ନାହିଁ ସେକଥା ଯେ ଦିନରାତି କରୁଛି ସେ ଜାଣେ, ବନ ପୋଡ଼ିଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଲେ କିଏ ଜାଣିବ ?

ଆଉ ତୁମକୁ ଆସିବାକୁ ଲେଖିବି ନାହିଁ ।"

ତାଙ୍କର ଚିଠି ମୋ ବାଟ କଢ଼ାଇ ନେଲା, ଆଉ ଭାବିବାକୁ ଦରକାର ନାହିଁ, ଯିବା ।

ଫଳ ବାହାରିବା ମୋଟେ ଦୁଇ ସପ୍ତାହ ରହିଲା, ମନ ଉଚାଟ ଲାଗୁଛି । ଗାଁ ଆଉ ଭଲ ଲାଗୁନାହିଁ । ଅଳସୁଆମି କରି କରି ନବୃତ୍ତି ଆସିଗଲା, ଆମ୍ବ ଖୋଜିଲା, ନୂଆ—ନୂଆ—ନୂଆ ।

ବାଟର ଡାକ ମରମରେ ବାଜିଲା । ମୁଁ ଚାଲିଲି ।

'ପିଲାଙ୍କୁଆ ସୁନା ସ୍ୱାନ ଭଉଣୀଟି, ରେଣୁକା,' କେଡ଼େ ଭଲପାଏ ।

ତା'ପରେ ମଞ୍ଜୁଳିକା, ସମ୍ବନ୍ଧ ସହାନୁଭୂତିମିଶା ସ୍ନେହବୋଳା ହସ ଛୁରିକ ପଡ଼େ ତା'ର ମଉନ ତଳ ତଳ ଆଖି ଯୋଡ଼ିକରୁ ।

କଞ୍ଚନମାଳା—ଜୀର୍ଣ୍ଣ ପ୍ରାଚୀନ ଧ୍ୱଂସସ୍ତୂପ ଆବୋରି କରୁଣ ରାଗିଣୀଟିଏ ପରି ।

ମା' ଭଉଣୀ ଓ ଗୁରୁଜନମାନଙ୍କର ସ୍ନେହ, ଶାଗୁଆ ଘାସର ଅସଂଖ୍ୟ ଚେର ପରି ଯାହା ବାନ୍ଧି ରଖିଛି ମୋ'ର ମାଟି ପିଣ୍ଡଟାକୁ ।

ଏସବୁମାନଙ୍କ ଅନୁଭୂତିରେ ଭାସି ଭାସି ଚାଲେ ମୋ'ର କଳ୍ପନାମୟ ଜୀବନ, ଏସବୁର ଇଙ୍ଗିତ-ସଙ୍କେତ-ପୁଷ୍ଟ ଅନୁଭୂତିକୁ ଗୋଟାଇ ଗୋଟାଇ ଜୀବନ ବିତାଏ—ଭୁଞ୍ଜା କଳ୍ପନା, ଜୀବନବ୍ୟାପୀ କଳ୍ପନା—ମାୟା—

ପବନ, ଆକାଶ, ଗଛ, ଲତା, ପ୍ରକୃତିର ଛବି, ସୃଷ୍ଟିର ଛନ୍ଦ, ରୂପ, ରସ, ଗନ୍ଧ, ।

କେବଳ ଅନୁଭୂତି ।

କେତେବେଳେ ଭାବେଁ ଯେ ମୁଁ ଅଛି । ପୁଣି କେତେବେଳେ ଭାବେଁ ଯେ ମୁଁ ନାହିଁ ।

ଭାବେଁ ପାଇଛି, ପୁଣି ମୁଠା ଖୋଲେଁ, ଦେଖେଁ ଶୂନ୍ୟ, କିଛି ନାହିଁ ।

ସେଦିନ ରେଲ୍‌ରେ ଗୋଟିଏ ଏକୁଟିଆ କୋଠରୀରେ ବସି ଭାବୁଥିଲି, ଗାଁ ଛାଡ଼ି ଯେତେବେଳେ ଭାଉଜବୋଉଙ୍କ ବିଦେଶକୁ ଧାଉଁଥିଲି । ଟାଣିଓଟାରି ଭାବିବାକୁ ଚେଷ୍ଟା କରୁଥିଲି ଯେ ସଂସାରଟା ମିଛ, ସବୁ ସମ୍ବନ୍ଧ ଅନ୍ଧାର ଖାଲି—ଯେତେଦିନ ବଞ୍ଚିଥାଇଁ, ଆମକୁ ଦର୍ପଣ ପାଇ ସଂସାରର ସବୁ ଛବି ନିଜର ପ୍ରତିଛବିକୁ ଆମରି ଉପରେ ଦେଖି ନେଉଛୁ ।

ସେଇ ସକାଳ ବେଳଟା, ପଦାକୁ ଚାହିଁ ଚାହିଁ କ୍ରମେ ମୋ'ର ପାରୁ-ପର୍ଯ୍ୟନ୍ତ ଚେଷ୍ଟାର ଅବିଶ୍ୱାସବାଦ କେଉଁଆଡ଼େ ଉଭେଇ ଯାଉଥାଏ । ପାଖର ପୃଷ୍ଠଭୂମି ପଛକୁ ଯାଉଛି, ଦୂରର ଯାଉଛି ଆଗକୁ—ଯାଉଛି କିନ୍ତୁ ବାହାରର ଦୃଶ୍ୟରୁ ଏତେ ବଡ଼ ଆଖି ଦୃଷ୍ଟିଶୀ ସ୍ଥୂଳ ବାସ୍ତବିକ ସ୍ଥାୟିତ୍ୱ ହିଁ ଜଣାଗଲା ବେଶି । ପାହାଡ଼, ଟାଙ୍ଗର, ବସନ୍ତର ବଣ ଜଙ୍ଗଲ, ସବୁଜା ଚେକାଭଉଁରୀ ଖେଳର ଦୃଶ୍ୟ ଭିତରେ ଅଦେଖା ଶିଳ୍ପୀର ରୂପଯୋଜନା ଓ ପାଳଧୂଆ ଫୁଲର ମଉଛବ, ଝଙ୍କା ଝଙ୍କା ବଡ଼ ବଡ଼ ଗଛ, ଅସୁମାରି ଗାଁଗଣ୍ଡା, ଏଥିରୁ ନାହିଁ ନାହିଁ ଅପେକ୍ଷା ଅଛି ଅଛି ହିଁ ବେଶି ଜଣାପଡ଼େ, ମାୟା ରୂପ ଦେଖିଛି ଏବଂ ଅଛି ।

ପ୍ରକୃତିକୁ ଚାହୁଁ ଚାହୁଁ ବନା ଭାବ ବିଶ୍ୱର କେତେବେଳେ ମୋ'ର ମନ ମଣିଷକୁ ହିଁ ବାଛି ନେଲାଣି, ବୁଝି ପାରିଲି ନାହିଁ । ଗାଡ଼ିରେ ସେହି ନିରୋଳା କୋଠରୀରେ, ଯେଉଁଠି ସମାଜର ଆଇନ ମୋତେ ଛୁଇଁ ପାରିବ ନାହିଁ—ଯେଉଁଠି ପାପ ପୁଣ୍ୟ ନ୍ୟାୟ ବିଚାରକୁ ପଛଆଡ଼ ଦେଖାଇ

ମଣିଷର ଈର୍ଷାର ବିଷ ମୋତେ ଛୁଇଁ ପାରବ ନାହିଁ—ଯୌବନ ଉଚ୍ଛନ୍ନ କରୁଥିଲା ମୋତେ । ପଦାକୁ ଗ୍ୱହିଁ ଗ୍ୱହିଁ ମୁଁ ଗୋଟାଉଥିଲି, ସୁନ୍ଦର ମୁହିଁ, ସୁନ୍ଦର ରୂପ । କେଉଁ ନଈରେ ନଗ୍ନେଇ ଭୂଠରେ କେଉଁ ସୁନ୍ଦରୀ ନଗ୍ନ ଦେହର ଜ୍ୱାଳା ଜଳରେ ଶୀତଳ କରୁଛି । କଏ କେଉଁଠି କେଉଁ ଅବସ୍ଥାରେ ରହିଛି, କଏ ବସିଛି, କଏ ଗ୍ୱଲୁଛି । ହଠାତ୍ ରେଲ୍‌ଗାଡ଼ି ଗ୍ୱଲିଗଲା, ମୁଁ ମନେ ମନେ ଫଟୋ ନେଇଗଲି ।

ଦେହର ଭୋକ ଆଉ ମନର ଶୋଷ ଏକାଠି ମୋଡ଼ମାଡ଼ି ହୋଇ ମିଶି ଯାଉଥାଏ ମୋ'ଠାରେ ।

ଗାଡ଼ି ଗ୍ୱଲିଯାଏ, ମୁଁ ପଛକୁ ପଛକୁ ଗ୍ୱହିଁ ରହିଥାଏ, ଯେପର୍ଯ୍ୟନ୍ତ ଦୃଷ୍ଟିରୁ ଅନ୍ତର ନ ହୋଇଛି ।

ସେଗୁଡ଼ାକ—ଛାଇ, ଖାଲି ଚଳନ୍ତି ଛାଇ, ସେଥିପାଇଁ ଖାଲି ଶୋଷ ହିଁ ବଢ଼େ, ମେଣ୍ଟିବାର ଆତ୍ମପ୍ରସାଦ ଆସେ ନାହିଁ ।

ହୋଇ ଯେଉଁ ତରୁଣୀଟିକୁ ଏବେ ମୁଁ ଦେଖିଲି, ଯାହା ପାଇଁ ଏତେ ପଛକୁ ପଛକୁ ମୁଁ ଗ୍ୱହୁଁଥିଲି, ହଠାତ୍ ଯଦି ଗାଡ଼ି ସେଠି ଅଟକି ଯାଉଥାନ୍ତା, ମୁଁ ସେଠି ରହିପିବାକୁ ସୁବିଧା ପାଆନ୍ତି, ତେବେ କ'ଣ ମୁଁ ତାହା ପଛରେ ଏହିପରି ଆଗ୍ରହରେ ଧାଇଁ ଯାଆନ୍ତି ? ନା, ମୁଁ ତାକୁ ପାଟି ଫିଟାନ୍ତି ନାହିଁ ମୋଟେ । ସେ ମୋ'ର ଆଖିରେ ଆଦୌ ପଡ଼ନ୍ତା ନାହିଁ, ବାସ୍ତବତାରେ କେତେ ସୀମା ପରିସୀମାର ବାଡ଼ ତାକୁ ଉହାଡ଼ କରି ରଖିନଥାନ୍ତା । ସେ ହୁଅନ୍ତା ମଣିଷ, ଛାଇ ହୋଇ ରହନ୍ତା ନାହିଁ ।

କିନ୍ତୁ ଗାଡ଼ି ଅଟକି ରହିବ ନାହିଁ, ତେଣୁ ମୁଁ ମନଇଚ୍ଛା ଗ୍ୱହିଁ-ଯିବି । ପ୍ରବଣତା ଉଚ୍ଛୃଙ୍ଖଳ ହୋଇ ଖୋଜି ବୁଲିଲା, କେଉଁଠି କଏ ଅଛି, ଖୋଜିଲି ନଗ୍ନତା, ଖୋଜିଲି ତରୁଣୀର ରୂପ, ଯେତେ ପାଇଲି ସେତେ ଖୋଜିଲି—ଛାଇ ପିଚାଶୁଣୀ ଛାଇ ଖାଲି ମୋର ରକ୍ତ ଶୋଷିଲେ, ମନକୁ ଖେଞ୍ଚିଲା, କିନ୍ତୁ ଶାନ୍ତି ଦେଲା ନାହିଁ ।

ତଥାପି ମୁଁ ଗ୍ୱହିଁ ଗ୍ୱହିଁ ଗଲି ।

ଲୋକେ କହିବେ ସେ ମୋ'ର ମନର ଦୁର୍ବଳତା । ମୁଁ ଭାବୁଛି କେବଳ ଦୁର୍ବଳତା ନୁହେଁ, ଅମାର୍ଜନୀୟ ପଶୁତ୍ୱ, କିନ୍ତୁ ଜୀବନର କେଉଁଟା ହିନ ସବଳ ଦେବତ୍ୱ ଦେଖି କହେ ? ତାହା ମଧ୍ୟ ଗୋଟାଏ ସଂସ୍କାର

ମାତ୍ର । ସୃଷ୍ଟିର ବୈଶିଷ୍ଟ୍ୟ ଭିତରେ ଏହି ପଶୁତ୍ୱ ପରି ଗୋଟାଏ ସଂସ୍କାର । ବିନାଶପାଇଁ ଯେ ଯେତିକି ଉପଯୋଗୀ, ଆମେ କହୁଁ ସେ ସେତିକି ଦୁର୍ବଳତା, କେବଳ ଭାବନାର ଢଙ୍ଗ, କେଉଁଟା ବିନାଶର ହେତୁ ଓ କେଉଁଟା ନୁହେଁ, ସେଥି ଅନୁଯାୟୀ ପଶୁତ୍ୱ ବା ଦେବତ୍ୱର ଧାରଣା ।

କିନ୍ତୁ ସେଦିନ ରେଲଗାଡ଼ିର ଝରୋକା ଡବାରେ ବସି ଦେଖିଛି, ସବୁ ଖାଲି ଛବି, ମିଳାଇ ଯାଉଥିବା ଛବି, କେଉଁ ଛବିକୁ କେତେ ସମୟ ଦେଖିହେବ—କ୍ଷୁଦ୍ର ସମୟର ତାରତମ୍ୟ ।

କାହା ପାଇଁ ଆୟୁଷରୁ ବାରପଣ ଉଜାଡ଼ି ଦେଇସାରି ସେ ଭୁଲିଯାଏ, କିଏ ଅବା ଭୁଲିଯାଏ ଆଗ ।

ଛବି ପଛରେ ଗୋଡ଼ାଇ ଗୋଡ଼ାଇ ଚାଲି ଯାଏ, କିନ୍ତୁ ଧରି ରଖି ହୁଏ ନାହିଁ ।

ମୋ'ର ଦୁର୍ବଳ ପଶୁତ୍ୱ ଉଣ୍ଡି ଉଣ୍ଡି ଦେଖିଲି, କେଡ଼େ ସୁନ୍ଦର ମୁହଁ, ସୁନ୍ଦର ଦେହ ! ସେଇ ମୁହୂର୍ତ୍ତରେ ଆଖିରେ ନିଶା ପୂରିଯାଏ, ଦେଖୁ ଦେଖୁ ପୁଣି ମୁଁ ଭୁଲିଯାଏ ଦୂରକୁ—ଦୂରକୁ । କେତେ ଛବି ଆସେ, କେତେ ଯାଏ, ସ୍ମୃତି ସ୍ମୃତି ଲଦାଲଦି ହୁଏ । ସ୍ମୃତି ସ୍ମୃତି ତୁଳନା ଭିତରେ କଟାକଟି ଲଗାଇ କେତେ ବୁଡ଼ିଯାଏ ।

କ୍ରମେ ସବୁ ଯାଏ ବୁଡ଼ି—ମନର ଗହ୍ୱର ପାଣିରେ ବୁଡ଼ିଯାଏ···।

ବହୁତ ଦୂର ବାଟରେ ପାହାଡ଼, ଜଙ୍ଗଲ, ବାଘ, ଭାଲୁଙ୍କ ଦେଶରେ ମଫସଲି ସହରରେ ଥା'ନ୍ତି ସେ ବଡ଼ା'ପା ପୁଅ-ଭାଇ ଓ ଭାଉଜବୋଉ ସେଠି ଥାଆନ୍ତି ।

ରେଲରୁ ଓହ୍ଲାଇ କେଁକଟର ବଳଦଗାଡ଼ିରେ ବଙ୍କାତଙ୍କା ଜଙ୍ଗଲ ରାସ୍ତାରେ ବୋଟେ ବାଟ, ଠାଏ ଠାଏ ନାଲି ପଥର କଳା ପଥରର ଲଣ୍ଡା

ପାହାଡ଼ ତଳେ ରାସ୍ତା ବଙ୍କେଇ ବଙ୍କେଇ କେନ୍ଦ୍ରେଇ କେନ୍ଦ୍ରେଇ ଯାଇଛି, ପୁଣି ଠାଏ ଠାଏ ଘନ ଜଙ୍ଗଲ, କ୍ରମେ ପାତଳା ହୋଇ ଆସିଛି, ଖାଲି ବୁଦ୍ଧବୁଦ୍ଧକିଆ ଜଙ୍ଗଲ ।

ଉଠୁପଡ଼ ନାଳି ରାସ୍ତାରେ ଖେଁକଟର ଶଗଡ଼, ବଳଦଙ୍କ ବେକରେ ଘଣ୍ଟି ଠୁଣ୍ଟୁ ଠୁଣ୍ଟୁ ବାଜେ, ହଲି ହଲି ଟଳି ଟଳି ଗାଡ଼ି ଚାଲେ ।

କାଠ କଟାଳିଙ୍କ ଠୋଠା ପାହାର ଶୁଭେ, ଶଅରଟିଏ ଗୀତ ବୋଲି ବୋଲି ବା ବକର ବକର ହୋଇ, କାଠବଡ଼ା ବୋଝେଇ ହୋଇ ଦଳବାନ୍ଧି ଯାଆନ୍ତି ।

ନୂଆ ଜାଗା, ସବୁ ଭଲ ଲାଗୁଥାଏ, ସବୁଠୁଁ ବେଶି ଭଲ ଲାଗୁଥାଏ ଯୋଗ-ନିବନ୍ଧ ଶମିତ ଅଚଞ୍ଚଳ ଉଦାର ପ୍ରକୃତି, ଯାହାର ଧୂଳି ପବନ ସୂକ୍ଷ୍ମ ଆଣେ କେଉଁ ସ୍ଥିତିମାନ୍ ପ୍ରାଚୀନତାର ଧାରଣା, କେଉଁ ଚିରନ୍ତନ ସନ୍ଦେଶ ।

କ୍ରମେ ଛୁଇ ନେଉଟିଲି, ଜଙ୍ଗଲ ସରିଲା, ପଡ଼ିଲା ଢେଉଢେଉକା ଟାଙ୍ଗରା ପଦର ଭୂଇଁ, ଯେତେ ଦୂରକୁ ଆଖି ଯାଉଛି ଖାଲି ବଡ଼ ବଡ଼ ଢେଉ, ଢଗ୍‌ବଳସ୍ଥର ଏପାଖ୍ ସେପାଖ ହଲି ହଲି ଯାଉ ଯାଉ ଯେପରି ହଠାତ୍ ସେହିପରି ଟାଙ୍ଗର ପାଲଟି ଯାଇଛି ।

ଗଛ ନାହିଁ, ଫସଲ ନାହିଁ, କେବଳ ଟାଙ୍ଗରା ମୁଣ୍ଡରେ ଧରି ଆସୁଥିବା ଶେଷ ବାଳ ପରି ଠାଏ ଠାଏ ଶୁଖିଲା ବୃକୁଣ୍ଡା ଗଛର ଥୁଣ୍ଟା, କଳା କନ୍ଦରା, କଳା କନ୍ଦରା ।

ଏଇ ଢେଉ ଶେଷରେ, କେତେ ଦୂରରେ ତାଙ୍କର ଘର—ଖଣ୍ଡେ ଛୋଟ ଗାଁ'ରେ ।

ଆବୁଖାବୁଡ଼ା ଢେଉଢେଉକା ଟାଙ୍ଗରା ଭୂଇଁ, ଚଉପାଖ ଖୋଲା, ବେ-ଛପର । ଉପରେ ଖୋଲା ଆକାଶ । ସତେ ଯେପରି ବସ୍ତୁନ୍ତର ଖେଳ, ସ୍ଥିତି ଆଉ ବସ୍ତୁନ୍ତରର ପରିବର୍ତ୍ତନ ନାହିଁ, କେବଳ ସ୍ଥିତି ।

ଗୁଇ ଲେଉଟି ଆସିଲା, ତେଜ ତେଜକା ଟାଙ୍ଗର ଉପରେ ଗ୍ୱକୁଣ୍ଡା ଖୁଣ୍ଟା ମଝିରେ ଫମେ ଗୁଇ ଖୁନ୍ଦହୋଇ ଆସିଲା । କେଁକଟର ବଳଦଗାଡ଼ି ଭିତରୁ ମୁହଁ ପଦାକୁ କାଢ଼ି ଦେଖିଲି, ଟଣ୍ଡେ ବସ୍ତି, ତା ସେପାଖକୁ ପିଠି ଉଡ଼ୁଆଳ କରି ରହିଛି ଅବଏ ଗ୍ଲେଟ ଜଙ୍ଗଲ ।

ଭାଇଙ୍କ ବସା ସାମ୍ନାରେ ଗାଡ଼ି ଠିଆ ହେଲା, ସେତେବେଳକୁ ଟାଙ୍ଗର ଉପରେ ସୂର୍ଯ୍ୟ ବୁଡ଼ୁଛି ।

ବାହାରେ ଠିଆ ହୋଇ ଡାକଟାଏ ଯେମିତି ମାରିଛି, କଲକାଲିଆ ହୋଇ ଆଗ ଭାଉଜବୋଉ ଦଉଡ଼ି ଆସିଲେ, ମୁହଁରେ ହସ ଖୁସି ବ୍ୟଗ୍ରତା ଆଉ ଅଜସ୍ର ପ୍ରଶ୍ନ । ତାଙ୍କର ଗ୍ଲେଟ ଝିଅଟି, କୁନ ଆଁ କରି ଠିଆ ହୋଇ-ଥାଏ କବାଟରେ । ପଦାରେ ଠିଆ ଠିଆ ତାଙ୍କ କଥାର ଜବାବ ଦେଉ ଦେଉ ଭାଇ ଆସି ପହଞ୍ଚିଲେ, କହିଲେ, "ଆଗ ଖୋଇପେଇ ଥଣ୍ଡା କରିବ ନା ଖାଲି ପଚ୍ଚରି ପଚ୍ଚରି ହଇରାଣ କରିଦେବ ?" ଭାଉଜବୋଉ ହସିଲେ, କହିଲେ, "ମୋ ଗରଜ ପଡ଼ିଛି ଆଉ, ମା ଲୋ, ଯ୍ୱାଙ୍କର ଖାଲି ପେଟ ଚିନ୍ତା, କେମିତି ବାଡ଼ି ବସିଲେ ନଜେ ଚେକା ପକେଇ ବସି ପଡ଼ିବେ ।"

ଭିତରକୁ ଗଲୁଁ, ଖୁସିରେ ଖୁସିରେ ଗୋଡ଼ ତଳେ ପଡ଼ୁ ନ ଥାଏ । ମଣିଷଙ୍କ ବସ୍ତିଠୁ ଦୂରରେ କେଉଁ ପାହାଡ଼ ଟାଙ୍ଗର କଣରେ ଖଣ୍ଡେ ଗ୍ଲେଟ ଗାଁ, ଅଜ୍ଞାତ ବନବାସରେ କେତେଟା ଲୋକଙ୍କର ଗୁଜୁରି ପରି, ଶେଷ ବସନ୍ତର ସେହି ଗୋଟିଏ ମହୁଲଫୁଲିଆ ସଞ୍ଜରେ ସେଠି ଆରମ୍ଭ ହେଲା ଗୋଟାଏ ନୂଆ ଅନୁଭୂତି, ରଙ୍ଗେଲ ଜୀବନର ଗୋଟାଏ ପୃଷ୍ଠା ସେଠି ଓଲଟିଲା, ଭବ ଅନୁଭୂତିରେ ଜୀବନ ଆହୁରି ଟିକଏ ଆଗକୁ ଗ୍ୱଲିଲା ।

ସଞ୍ଜପହରୁ ଅଛିଣ୍ଡା ଗପ ଓ ମାନ ଅଭିମାନର ଅଭିନୟ ବହୁତ ରାତି ପର୍ଯ୍ୟନ୍ତ ଗଡ଼ିଗ୍ୱଲିଲା, ମଝିରେ ମଝିରେ ଭାଉଜବୋଉ ଯେତେବେଳେ ରୋଷେଇ ଘରକୁ ଗ୍ୱଲିଯାଆନ୍ତି ବସି ବସି ଗ୍ରାମୋଫୋନ୍ ବଜାଏଁ ।

ବହୁତ ରାତିରେ ଜାଗା କରିସାରି ଭାଉଜ ଆସି ପଚ୍ଚରିଲେ—

"ଏ କ'ଣ ରାଧୁ, କ'ଣ ଗିଲବ ନାହିଁ କି ?"

ଭାଇ ଓ ମୁଁ ଖାଇ ବସିଲୁଁ । ସେ ମୋ ପାଖେ ବସି ସ୍ନେହପଗ ହୋଇ ଖାଲି କହୁଥାନ୍ତି—

"କ'ଣ ଲାଜ କରୁଛ କି ? ଆଚ୍ଛା ମୁଁ ଖୋଇ ଦେଉଛି ।"

ତା'ପରେ ନିଜେ ଗୁଣ୍ଡାମାନ ବଳି ସବୁକୁ ସବୁ ମତେ ଖୋଇ ଦେଉଥାନ୍ତି ଓ ଭାଇଙ୍କ ଆଡ଼କୁ ଚାହିଁ ଚାହିଁ ହସୁଥାନ୍ତି । ମତେ ଭଲ ଲାଗୁଛି କି ଅସଜ ଲାଗୁଛି ମୁଁ ଠିକ୍ କରିପାରୁ ନ ଥାଏ ।

ସମସ୍ତେ ଖାଇ ସାରିଲେ । ମୁଁ ଶୋଇବାକୁ ଗଲି । ନିଜେ ଆସି ମଶାରି ପକାଇଦେଲେ । ମଶାରି ଭିତରେ ମୁହଁ ଗଳେଇ ମୋ'ର ମୁଣ୍ଡକୁ ଟିକିଏ ଆଉଁସି ଦେଇ କହିଲେ—

"ଶୁଅ ଏଥର, ମୁଁ ମେଲିଣି ନେଉଛି" କହି ଚାଲିଗଲେ ।

ପ୍ରଶଂସା, ଭକ୍ତି ଓ କୃତଜ୍ଞତାରେ ମୁଁ ଭିତରେ ଭିତରେ ଫୁଲି ଫାଟି ଯାଉଥାଏଁ । ଘର ମନେପଡ଼ିଲା ନାହିଁ, ବାଟ ମନେପଡ଼ିଲା ନାହିଁ, କିଛି ମନେପଡ଼ିଲା ନାହିଁ । ସ୍ନେହ ଓ ଆନନ୍ଦର ଧୂଆପୋଛା ଧୋବଧାଉଳିଆ ମନରେ ଖାଲି ଆସିଲା ଶୁଭ ଇଚ୍ଛା, ଏହିମାନଙ୍କ ପାଇଁ ଯେଉଁମାନେ ମତେ ଏତେ ଆଦର ଦେଖେଇଛନ୍ତି । ଯାହାଙ୍କ ସାଙ୍ଗରେ ଗୋଟାଏ ଛାତ ତଳେ ମୁଁ ଏଠି ଶୋଇଛି । ଏତେ ଦୂରରେ, ଘରଠୁ ଏତେ ଦୂରରେ । ବୋଉ ବାପା ମନେପଡ଼ିଲେ—ସମସ୍ତେ ମନେପଡ଼ିଲେ—

ସମସ୍ତଙ୍କୁ ମୁଁ କେତେ ଭଲପାଏଁ ! ସମସ୍ତେ ମତେ କେତେ ଭଲ ପାଆନ୍ତି—!

ଆଖିପତା ଓଠା ଲାଗିଗଲା ।

ସତେ ମୁଁ ତାଙ୍କୁ କେଡ଼େ ଭଲପାଏଁ—ଏକା ଆମ୍ଭରେ ମା' ଆଉ ଭଉଣୀ, ସାଙ୍ଗସାଥୀ ସବୁ ।

ସେଠି ଖାଲି ଏକୁଟିଆଟା, ଏଇ ଏକୁଟିଆ ନିଘୁଟିଆ ସମୟ ଆମକୁ ଆହୁରି କେତକୁ କେତ ଭିଡ଼ି ଆଣିଥିଲା ।

ଭାଇ ବେଳ ଅବେଳରେ କାମକୁ ଚାଲିଯାନ୍ତି ଯେ ପୁଣି ଫେରୁ ଫେରୁ ଆସି ହେଲ ଦି'ପହର । ତା'ପରେ ବନ୍ଶୀଟାଏ ଧରି ଚାଲିଯାନ୍ତି ମାଛ ଧରି, ଗୋଟି ଘଡ଼ିକେ ଫେରି କହନ୍ତି, "ଆହା ଏତେ ବଡ଼ ମାଛଟାଏ ଲାଗିଥିଲା, ଖସିଗଲା ତ ଉଠୋଉ ଉଠୋଉ ।"

ସକାଳ ଓଳିଆ ଓଠି ଆଉ ମୁଁ, ମୁଁ ଆଉ ସେ, ଏକାଠି ଖାଲି ବସିଥାଉଁ, ଆଉ ଗପୁଁ କେବଳ ସାନ୍ନିଧ୍ୟ ବଜାୟ ରଖିବାକୁ ।

"ତୁମ ପାପୁଲିଗୁଡ଼ାକ କେଡ଼େ ଝାଣ୍ଟୁଆ ମ", ସେ କହନ୍ତି ।

ମୁଁ କହେ, "କାହିଁ ହିଂସା ହେଉଚି କି ? ଆଉ ଖାଲି ତମରି ହାତ ପରି ନରମ ପୁଚ୍ ପୁଚ୍ ?"

"ଓଃ କାଟିଲି, ନାଇଁ ତମ ଝାଣ ହାତ ଆମର ଦରକାର ନାହିଁ", ସେ କହନ୍ତି ।

ନହାତ ବ୍ୟସ୍ତ ହୋଇ ସେ କହନ୍ତି, "ଆଚ୍ଛା ମୁହଁକୁ ମୁହଁ ଯୋଡ଼ି ଏହିପରି ଖାଲି ବସି ରହିଥିବା ନା ରୋଷେଇବାସ କିଛି ହେବ ?"

"ବେଶ୍ ତୁମେ ରୋଷେଇବାସ କର, ମୁଁ ଯାଉଛି ମାଛ ମାରି—"

"ନାଇଁ ନାଇଁ ତୁମେ ଯାଅନା, ପଛେ ରୋଷେଇବାସ ନ ହେଉ", ସେ କହନ୍ତି । ଆଉ ହସି ହସି ଗାଲି ଫୁପୁଡ଼େଇ ଦିଅନ୍ତି । କହନ୍ତି, "ଆସ ରୋଷେଇ କରିବ ।"

ନିଜେ ଗ୍ରାମୋଫୋନ୍‌ରେ ରେକର୍ଡ ଖଞ୍ଜିଦେଇ ଚାଲି ଯାଆନ୍ତି, କହନ୍ତି ଶୁଣ ବସି ବସି ।

ଆମ ପରସ୍ପର ଭିତରେ ଏପରି ଗୋଟାଏ ସ୍ନେହର ସମ୍ବନ୍ଧ ଥିଲି, ଯହିଁରେ ଆନନ୍ଦ ହିଁ ଥିଲି ସାର, ସଂକୋଚ ଲଜ୍ଜା ବା ଗୁରୁ ଗଉରବ, ମାନ ଅପମାନର ଧାରଣା କେବେ ଭୁଲ୍‌କରି ସୁଦ୍ଧା ଛୁଇ ପକାଇ ନାହିଁ ।

ତାଙ୍କର ସ୍ୱଭାବର ବଶିଷ୍ଟ ଗୁଣ ଥିଲି, ସବୁ ପରିସ୍ଥିତିରେ ନିଜକୁ ମିଳାଇଦେଇ ପାରିବା ଶକ୍ତି, ଗୋଟାଏ ତୁମେ—ଯେପରି—ସ୍ବୟଂ, ଭାବ । ତେଣୁ ସବୁଦିନେ ସେ ନୂଆ, ସବୁଦିନେ ତାଙ୍କର ସମ୍ବନ୍ଧ ସ୍ନିଗ୍ଧ ଆଉ ମଧୁର । ତହିଁରେ ଶାନ୍ତି ଆସେ, ଉଷ୍ମତା ଆସେ ନାହିଁ । ଆନନ୍ଦ ଆସେ, ଦୁଃଖ ଆସେ ନାହିଁ ।

ଦୁଃଖ କଲେ ସୁଦ୍ଧା ତାଙ୍କ ପାଖରୁ ନିସ୍ତାର ମିଳିବା ସହଜ ନୁହେଁ । ସେଠିକାର ସହଜ ଅବସ୍ଥିତିଭାବ ଭିତରେ ଯେତେ ଥର ମୁଁ ମୋ'ର କୁହୁଳୁଥିବା ଚିନ୍ତାଗୁଡ଼ାକୁ ପସରା ମେଲେଇ ଦେଇ ବସି ଭାବିଛି, ଯେତେ ଥର ତାଙ୍କ ପାଖେ ଧରା ପଡ଼ିଯାଇଛି, ସେ ବୁଝିପାରିଛନ୍ତି । ଏହି ବୁଝିପାରିବା

ବୋଧତ୍ତ୍ୱଏ ନାଶ୍ର ଜୀବନର ବଶିଷ୍ଟତା । ଏହ୍ୱ ବୁଝିପାରବା ଶକ୍ତିର ତାରତମ୍ୟ ଅନୁସାରେ ମୂଲ ହୁଏ । ନାଶ୍ର-ପ୍ରାଣର ସ୍ନେହ···ବୁଝି ପାରବା ଅନୁସାରେ ।

ସେଦନ—କେତେ କଥା ବସି ଭାବୁଥିଲ । ଝୋଲମଗ୍ର ହ'ପହରଟା, ଦୁଆରମୁହଁ ପାଖେ ଭାଉଜବୋଉ ବସି ବସି ଅଧ ଅଧ ଅନ୍ୟମନସ୍କ ହୋଇ ଗୋଟାଏ ତାଳପତ୍ରର ବଞ୍ଚଣା ଧର ତହିଁରୁ ପତ୍ରଗୁଡ଼ାକ ମୋଡ଼ ମୋଡ଼ ଛିଣ୍ଡାଉଥିଲେ, ଆଉ କଥା ଗପୁଥିଲେ ।

ଗ୍ରାମୋଫୋନ୍‌ରେ ବାଜୁଥିଲା ସୁରବାହାର୍ ଯନ୍ତ୍ରରେ ଗୋଟିଏ ଭୈରବୀ ଆଳାପ ।

ଖଟ ଉପରେ ତକିଆକୁ ଆଉଜ ବସି ମୁଁ ଶୁଣୁଥିଲ; ଆଉ କେତେ ଷ୍ଲେଟ ଷ୍ଲେଟ ମୁହଁ ମୋ ଆଖି ଆଗରେ ଏପାଖ ସେପାଖ ହୋଇ ଭାସି ଯାଉଥିଲେ; ମୁଁ ଏଣ୍ଡୁତେଣ୍ଡୁ ଭାବୁଥିଲ । ମୋ'ର ଅନ୍ୟମନସ୍କତା ତାଙ୍କ ଆଖିରୁ ଲୁଚିଲା ପାରଲ ନାହିଁ । ଗ୍ରାମୋଫୋନ୍ ଆପେ ଆପେ ବନ୍ଦ ହେଲା, ସେ ଉଠିଆସି ମୋ' କଣ୍ଠରେ ବସି ପଚାରଲେ—

"କ'ଣ ଏତେ ଭାବୁଛ ମଁ ବାବୁ ? କ'ଣ କହ ମୋ'—ବାଣଟି, କହ କହ ।"

ମୁଁ କହିଲ, "କାହିଁ କିଛି ନାହିଁ ତ ।" କଅଁଳ କର ମୋ'ର ହାତ ପାପୁଲିକୁ ଧରପକାଇ ସିଧା ମୁହଁକୁ ଅନାଇଁ କହିଲେ, "କହ କହ, ସତେ ମୋ'—ବାଣ ।"

ସେ ଗାରଡ଼େଇ କର ଗ୍ଣହିଁବା ଦେଖି ଭୁଚ୍ଛାଟାକୁ ମୁଁ ହସି ପକେଇଲ ଓ ତାଙ୍କ କୋଳରେ ମୁଣ୍ଡ ରଖି ଡଳ ପଡ଼ଲ । ମୋ'ର ମୁଣ୍ଡ ଆଉଁସୁଥାନ୍ତି ସେ ବସି ବସି, ଆଉ ଏଣ୍ଡୁତେଣ୍ଡୁ କଥା ଗପୁଥାନ୍ତି । ଝରକା ସେପାଖେ କେତେଗୁଡ଼ାଏ ବଣୁଆଚଢ଼ୁଆ ଗୀତ ବନ୍ଦ ହୋଇଯିବା ଦେଖି ଉହୁଙ୍କି କର ଡବ ଡବ ଆଖିରେ ଅନାଇଁ ରହିଥାନ୍ତି, କେତେବେଳେ ଗ୍ରାମୋଫୋନ୍ ପୁଣି ବାଜବ । ଭାଉଜବୋଉ ମୋ'ର ମୁଣ୍ଡ ଉପରେ ଆଙ୍ଗୁଠିରେ ଫିରେଇ କାଠୁ କାଠୁ କହିଲେ, "କହିବ ନାହିଁ ବାବୁ, କ'ଣ ଏତେ ଭାବୁଥିଲ ବସି ?"

ତାଙ୍କର ସହାନୁଭୂତଶୀଳ ତୋଳା ଯୋଡ଼ିକୁ ଗୁହିଁ ସବୁ ଚନ୍ତା ସବୁ ଭାବନା ବରଫ ବାଛ ଯାଉଥାଏ, ମୁଁ ସ୍ଥିର ହୋଇ ପଡ଼ ରହୁଥାଏ ।

କହୁଲେ, "ଆହା ଭୁଲ ଯାଇଛୁ କହୁବାକୁ, ରେଣୁ ତୁମକୁ ଦଣ୍ଡବତ ପଠେଇଛୁ—"

"ଓଃ ଘର ଖବର ତ, ମୁଁ ଭାବଲ ବା—"

"ଘର ନୁହେଁ—ସତ କର କହ୍ଲ—?"

ଉଭୟେ ହସିଲୁଁ । ମୁଁ କହ୍ଲ, "କହ୍ଲ, କହ୍ଲ ଭାଉଜବୋଉ କ'ଣ ତୁମ ବାହାଘରକୁ କାନ୍ଦଥିଲ ?"

"ଭାକ୍ ଭାକ୍—"

"ହଁ, ମୋ'ର ମନେ ନାହିଁ କ ପଦେ ଅଧେ—

"ଆଜ ଏତେବେଳେ ନାଳ କୂଳରେ ହୋ ହାଁ ବାପା,

କାଲ ଏତେବେଳେ ନଈ କୂଳରେ ଲୋ ହାଁ ବୋଉ ।"

ହସି ହସି ଦ୍ୱ' ହାତରେ ମୋ ମୁଣ୍ଡକୁ ଧଶ ଝିଙ୍କି ପକେଇଲେ ଓ ବାରମ୍ବାର ପାଟିରେ ହାତ ଦେଲେ । ଆମେ ହସିଲୁଁ, ପଦାରେ ଠିଆ-ହୋଇ ସେ ବଣୁଆ ଛୁଆଗୁଡ଼ିକ ହସିଲେ ।

ଭାଉଜବୋଉ ଭୁପ୍ କର ଗୁଲଗଲେ, କହୁଲେ, "ଯାଉଚ ମୁଁ ମୁଣ୍ଡ ବାଛବ, ତୁମେ ଏଠି ବସିଥାଅ ।"

ନତ ନତ ଏହିପର ରହସ୍ୟ କର ଆମେ ଦନ କଟାଇଦେଉଁ, କଥାବାର୍ତ୍ତାର ଯେ କଛୁ ଗୋଟାଏ ମୂଲ୍ୟ ଥାଏ ବା ଅର୍ଥ ଥାଏ ତା ନୁହେଁ, କେବଳ ଗପର ଆନନ୍ଦ ପାଇଁ ଗପ ହୁଏ । ଯେତେବେଳେ ମନେ ନ ପଡ଼େ, ସେତେବେଳେ ପୁଣି ପୁଣି ସେଇ କେଇଟା ପୁରୁଣା କଥା ପକାଇ ସମୟ କାଟୁଁ । ଗଳ୍ପ ନୂଆ ନୁହେଁ, ନୂଆ ଆମର ଅନୁଭୂତ, ଆମର ସାଙ୍ଗ-ସରସା, ସ୍ନେହର ପ୍ରତ ଶ୍ରେଷ୍ଠ ମୁହୂର୍ତ୍ତର ଅନୁଭୂତ ।

ଫଗୁଣ ବଉଳର ସୌରଭ ମିଶା ପବନ ପର ଆମର ସମସ୍ତ କାଟିବା କେବଳ ସ୍ୱପ୍ନମୟୀ ଅନୁଭୂତ, ମୁହୂର୍ତ୍ତ ମୁହୂର୍ତ୍ତକର ଅନୁଭୂତ, ଅବଚ୍ଛେଦ ବା ହାନ୍ତ ଚହ୍ନ ଅନୁଯାୟୀ ତହିଁର ଗଭର ମାପ ହୁଏନାହିଁ । ତା'ର ସାରତା କେବଳ ଉଦ୍ଦେଶ୍ୟହୀନ ଭସିବାରେ, ବଉଳର ମହୁ ଟୋପାକୁ ଛୁଇଁ ଘାସ ଉପରେ ଲହଡ଼ି ଖେଳବାରେ ।

ଭାଇ ମୋ ନଜର, ଭାଉଜ ପରଘର ଝିଅ, ଭାଇ ମୋ ରକ୍ତର ଭାଉଜ ପରଗୋଷ୍ଠୀ ।

କିନ୍ତୁ ମୋର ସବୁ ଅଳି, ସବୁ ଓଜର, ସବୁ ସୁଖଦୁଃଖ ଭାଉଜଙ୍କ ସାଙ୍ଗରେ ।

ଭାଇ ଗୁରୁଜନ, ଭାଉଜ ଲଘୁଠାରୁ ଆହୁରି କଣ୍ଠରେ । ଭାଇଙ୍କୁ ଦେଖିଲେ ମୁଁ ଆପଣାକୁ ମନେପକାଏ, ଚିନ୍ତା ଆଉ ଭାବ ସବୁ ଗୋଟେଇ ପୋଟେଇ ସଜାଡ଼ି ହୋଇ ଠିଆ ହୁଏ, ଆଡ଼େଇ ହୋଇ ରକ୍ଷ ମାନ୍ୟ ଧର୍ମ କରେଁ, କଥା କହି ବସିଲେ ମଝିରେ ମଝିରେ ଆପଣାକୁ କଳି ନେଉଥାଏଁ, କେଉଁଟା ଠିକ୍ ହେଲା କେଉଁଟା ଅବା ଭୁଲ ହେବ, ଆଉ—ଗମ୍ଭୀର ହୋଇଯାଏଁ । ଯେତେ ଥର ତାଙ୍କ ସଙ୍ଗେ ମାଛମଗ ପାଖକୁ ଯାଇଛି, ଲୁଗାଚାନ ବୁଲିଛି, ବେଶି ଗପି ନାହିଁ, ହୁମ୍‌ଦୁମ୍ ହୋଇ ନାହିଁ । ଯାହା ପଚାରିଛନ୍ତି ତା'ର ଠିକ୍ ଠିକ୍ ଉତ୍ତର ଦେଇଛି । ଆଉ ଯେବେ କେବେ କାମରେ ପଠାଇଛନ୍ତି ଯେ "ଯା ପାନ ଆଣ୍, ଯା ମାଛ ମସଲା ଆଣ୍", ଚଳ ପରି ଧାଇଁଯାଇଛି, ଯେପରି ଡେରି ଟିକଏ ହେଲେ ନ ହୁଏ, କାଳେ କ'ଣ ଅସୁବିଧା ତାଙ୍କର ହେବ ।

ସେ ହସନ୍ତି, ମୁଁ ମଧ୍ୟ ପାଳି ଧରେଁ । ହସ ନ ମାଡ଼ିଲେ ସୁଦ୍ଧା ହସେଁ । ତାଙ୍କର ହସର ସୁଅ ବନ୍ଦ ହୋଇଗଲେ, ଠିପି ମାରିଲା ପରି ମୁଁ ମଧ୍ୟ ହଠାତ୍ ଚୁପ୍ ହୋଇପଡ଼େଁ । ଯ୍ୱା ତା' ଆଗରେ ବେଳେ ବେଳେ ଯଦି ମତେ ପ୍ରଶଂସା କରିବସନ୍ତି, ଏତେ କୃତଜ୍ଞ ହୋଇଯାଏଁ ଯେ ମନେ ମନେ ତାଙ୍କୁ କେତେ ନମସ୍କାର କରେଁ, ଏଣେ ଲାଜରେ ଓଠ କାମୁଡ଼ି ମୁହଁ ତଳକୁ ପୋତେଁ; କିନ୍ତୁ, ହଁ ଭାରି ଭଲପାଏଁ ତାଙ୍କୁ, ମୁହଁ ଖୋଲେ ନାହିଁ, ମନ ଖୋଲେ ନାହିଁ ।

କେତେ ଲୋକଙ୍କ ପାଇଁ ମନ ହୁଏ, ସମସ୍ତଙ୍କ ପାଖେ ମୁହଁ ଖୋଲେ ନାହିଁ । କେତେକ ମନର, କେତେକ ଲୋକ ଭବର, ଆଉ କେତେ ଅଛନ୍ତି ଯେଉଁମାନଙ୍କୁ ଏଇ ଦୁଇ ପୃଥକ୍ ବିଶିଷ୍ଟତା ଭିତରେ ତାରତମ୍ୟ ରଖି

ଭିନ୍ନ ଭିନ୍ନ ଉପାୟରେ ମିଶାଇ ଦେଖିବାକୁ ହୁଏ । ସବୁ ସମ୍ବନ୍ଧ ଆପଣାକୁ ଆପେ ଦେଖାଇଁ ହୁଏ, ଏହିପରି ଗୁଣ ଅଂଶ-ବିଶିଷ୍ଟତାରେ, ଆପେ ଆପେ, ନିଃଶ୍ୱାସ ନେଲା ପରି ।

ସମ୍ବନ୍ଧଶୀଳ ଭାବ ଅନୁଭୂତିର ଜୀବନ ଭିତରେ ଏହିପରି କେତେ ସୁବାସ ଆମେ ପାଉଁ, କାଏ ମଧୁମାଳତୀର, କାଏ ରଜନୀଗନ୍ଧାର, କାଏ ଅବା ଧୂଳିମାଟିର, ଯାହାଁ ପାଇଁ ଦ'ଟା ମୁହୂର୍ତ୍ତ ସୁଦ୍ଧା କେହି ଭାବେ ନାହିଁ ।

ତେଣୁ ମୁଁ ଭାଇଙ୍କୁ ଭଲ ପାଏଁ, ଭାଉଜଙ୍କୁ ଭଲ ପାଏଁ ଅଥଚ ଭାଇଙ୍କ ପାଖେ ସଙ୍କୋଚ ଆସେ, ଭାଉଜଙ୍କ ପାଖେ ଆସେ ନାହିଁ ।

ସଞ୍ଜବୁଡ଼େ, ଆମେ ଦୁହେଁ ବସି ଗପ କଲାବେଳେ, ଭାଇ ବିନଯାକର ଖଟଣି ସାରି ଆସି ପହଞ୍ଚି ଯାଆନ୍ତି । ଲମ୍ବା ହୋ-ଟାଏ ମାରି ଆସି କହନ୍ତି—

"ବୁଝିଲ ନା, କେତେ ମାଛଟାଏ ପଡ଼ିଥିଲା ଆଜ, କ'ଣ ହବ, ଉଠେଇ ଉଠେଇ ତ ଗଲା ଖସି ।"

ଭାଉଜବୋଉ ହସି ହସି ଗଡ଼ିଯାଆନ୍ତି, ତାଙ୍କ ପିଠିପଟେ ମୁଁ ମଧ ଶବ୍ଦ ନ କରି ହସି ହସି ଲୋଟିଯାଏଁ ।

ଦେହରୁ ଗେଞ୍ଜି ଖଣ୍ଡି ଓହ୍ଲାଉ ଓହ୍ଲାଉ କହନ୍ତି, "କାଲେ ରାଧୁ, ଖାଇବୁ ପରା କାଣୁ—ଆଃ, ଗପ ଖୋଇ ଖୋଇ ପେଟ ପୂରେଇବ କି ? ଏମିତି ଭାଉଜ ତମେ—!"

ଭାଉଜବୋଉ କହନ୍ତି, "କ'ଣ ଆଜ ପେଟ ପୂରେଇବ, ମାଛଟା ତ ଖସିଗଲା—"

ତା'ପରେ ଉଠି ଚାଲିଯାଆନ୍ତି । ପନ୍ଦର ମିନଟ୍ ପରେ ଗ୍ରାମୋଫୋନ୍ ବାଜେ । ଭାଇ କହନ୍ତି, "ଖାଲି ଘରକୁ ପଶୁ ପଶୁ କାନ ଅତଡ଼ା ପକେଇଦବ ।" ଭାଉଜବୋଉ କହନ୍ତି, "ନା, ମୁଁ ନୁହେଁ ମିଁ, ରାଧୁ ଶରଧା କରି ତାଙ୍କ ଭାଇଙ୍କି ଶୁଣେଉଛନ୍ତି ନା ।" ଭାଇ ଦାଣ୍ଡ ଅଫିସ ଘରକୁ କାମ କରିବାକୁ ଉଠି ଯାଆନ୍ତି । ଭାଉଜବୋଉ ହସି ହସି ଆସି ପିଠି ଘୁସୁଡ଼େଇ କହିଦେଇ ଯାଆନ୍ତି, "ରାଧୁ, ସୁନା ଭାଇଟି, ବସିଥାଟି ଏଠି, ମନଇଚ୍ଛା ରେକର୍ଡ଼ ବାଛୁ ବାଛୁ ବଜେଉଥା । ମୁଁ ଟିକଏ ତରକାରୀଟା ଓହ୍ଲାଇଦେଇ ଆସେଁ ? ଏଁ ?"

ଭୁମା ହୋଇ କାଠକଣ୍ଢେଇ ପରି ରହେଁ । ରେକଡ ଉପରୁ ରେକଡ ବଜାଏ । ଗୀତ ମଝିରେ ଖାଉଜକବୋଉ ବୋଲି କେବେ ଡାକେ ନାହିଁ । ପୁରୁଣା ଗୀତ ମଧ୍ୟ ଶୁଣେଁ । ଗୋସେଇଁଙ୍କ ଗହାଁସର ସ୍ୱର ଭିତରେ ମାଖା କଲେଁ । ରେକଡ ବାଜେ, ଭୁମାତାନ ହୋଇ ବସିରହେଁ । ଶୁଣେ ସେ କାମ କରୁଛନ୍ତି । ବେଳେ ବେଳେ ଏ ଘରକୁ କ'ଣ ତାଙ୍କ କାମରେ ଆସି ବଜୁଳି ପରି ଭୁଲିଯାଆନ୍ତି, ଭୁହିଁଦେଲେ ଫାଇଁ କରି ହସି ଦିଅନ୍ତି, କହନ୍ତି, "ବଜୋଉଛ ? ବଜୋଉ ଥା, ଆଉ ଟିକଏ ।"

ଥରଥାଏ ବସି ଘର ମନେପଡ଼େ । କେତେଦିନ ହେଲା ଆସିଲିଣି ଚଟିଖଣ୍ଡେ ଯେ ଦେଇଥିଲ ଏଠି ପହଞ୍ଚ ଆଉ ନାହିଁ । କୋଣାରକ ଯିବା କଥା ଥିଲା ପରା—?

ଘର ମନେପଡ଼େ । ଘର ।

ଆମର ନୁଆଁଣିଆ ଘର । ବୋଉ, ବାପା ।

କିନ୍ତୁ ମନେପଡ଼େ ନାହିଁ । ଦେଖେଁ ରେକଡଟା ବୁଲୁଛି । ଗୋଟାଏ ଆଡ଼କୁ ଅନେଇଁ ରହେଁ । ଦେଖେଁ ବୁଲୁ ବୁଲୁ ଉଠୁଛି ପଡ଼ୁଛି । ଦେଖେଁ ନେଳିଆ ସମୁଦ୍ର, କାଠକଣ୍ଢେଇଟିଏ ଭାସୁଛି, ଢେଉ ଆସୁଛି ଯାଉଛି ।

କାଠକଣ୍ଢେଇଟା ଉଠୁଛି ପଡ଼ୁଛି, ଉଠୁଛି ପଡ଼ୁଛି ।

ପଛଆଡ଼ୁ ଚୁଟିଙ୍କା ପାଇ ସ୍ୱପ୍ନ ଭାଙ୍ଗିଯାଏ । ଖାଉଜକବୋଉ, ଦୁଇ ଗାଲ ହସ । ମୁହଁରେ ଝାଳ ବୁନ୍ଦା ବୁନ୍ଦା । ଲାଲ ପଡ଼ିଯାଇଛି ।

"କି—ଗିଳିବ ନାହିଁ ?"

ଗ୍ରାମୋଫୋନ୍ ବନ୍ଦ ହୁଏ ।

ସେଦିନ ବଡ଼ ଜହ୍ନଟିଏ ଉଠିଥାଏ । ଠିକ୍ ଝରକା ସେପାଖେ ଉଞ୍ଚ ଉଞ୍ଚ ଦେବଦାରୁ ଗଛ, ତାହାର ମୁଣ୍ଡ ଉପରେ ଜହ୍ନ । ବାହାରେ

ଘର ମଲ୍ଲୀ ଫୁଲ ଫୁଟିଥାଏ । ସଞ୍ଜ ବୁଡ଼ୁ ବୁଡ଼ୁ ଶୋଇ ଶୋଇ ମୁଁ ଦେଖୁଥିଲି, ଝକ୍ ଝକ୍ ସ୍ୱଚ୍ଛ ଆଲୁଅରେ ଝକ୍ ଝକ୍ ଫୁଲ । ଧୀର ପବନ ।

କଲେଜ ହଷ୍ଟେଲରେ କେତେ ଥର ବତି ନିଭେଇ ଦେଇ ଏହିପରି ଶୋଇ ଶୋଇ ମୁଁ ସ୍ୱପ୍ନ ଦେଖିଛି । ସେହିପରି ଗୋଟିଏ ସଞ୍ଜ ।

କିଏ କହେ ମୁହୂର୍ତ୍ତଗୁଡ଼ାକ ଖାଲି ହଜିଯାଏ ବୋଲି ? କେଉଁ ଅଦୃଶ୍ୟ ଗଣ୍ଡରେଖାରେ ବୁଲି ବୁଲି ଥରେ ଥରେ ପୁଣି ମୁହୂର୍ତ୍ତ ସବୁ ଆସେ । ଲାଗେ ଧରାପଡ଼ୁଛି । ପୁଣି ହଜିଯାଇ ରହିଯାଏ ଶତାବ୍ଦୀ ଶତାବ୍ଦୀର ବ୍ୟବଚ୍ଛେଦ ।

ଶୋଇ ଶୋଇ ମୁଁ ଦେଖୁଥାଏଁ ଝରକାକ ପାଖେ ପାଖେ ବସି ସଞ୍ଜ ହେଲେ ବେଳେ ବେଳେ ମୁଁ ମଞ୍ଜୁଳିକାକୁ ଯେପରି ଦେଖୁଥିଲି । ସେ ଆଜ କାହିଁ ?

ଜହ୍ନଆଁ ସଞ୍ଜରେ ମୁଁ ତାକୁ ଦେଖୁଥିଲି, ଯେତେବେଳେ ବଗିଚାର ଫୁଲଗଛ ଭିତରେ ଭୁଷ୍ ଭୁଷ୍ ହୋଇ ପବନ ଖେଳି ବୁଲୁଥିଲା ।

ମନେପଡ଼ିଲା କାନ୍ଥୁଗୋଇ ଘରର ସେ ନନ୍ଦନିଆ ବଡ଼ ପୋଖରୀ । ପାଣିରେ ଜହ୍ନ ଚକ ଚକ ଖେଳୁଥିବ । ଉପରେ ଖୋଲା ଆକାଶ । ତା' ସେପାଖର ଭୁଷୁଡ଼ି ପଡ଼ୁଥିବା ସେ ପାହାଚଗୁଡ଼ାକ । ଆଜ ତା' ଉପରେ ଉଡ଼ୁଥାଇ କରି ଗଛର ଛାଇ । ମଞ୍ଜୁଳିକାକୁ ଆମ ଘରେ ଫେରାଇ ଦେଇଥିଲେ, କିନ୍ତୁ ମଞ୍ଜୁଳିକାକୁ ସେ ଦୂର ବନସ୍ତରେ ମେଦିନ ସଞ୍ଜରେ ମୁଁ ଦେଖୁଥିଲି । ଭଲ ଲାଗୁଥିଲା । ଜହ୍ନ ଆଲୁଅ ମୁହଁକୁ ବାଆଁଳ କରିଦିଏ ପରା !

ଭାବୁଁ ଭାବୁଁ ରେଣୁକାକୁ ମୁଁ ମନେ ପକାଇଲି । ନିଜକୁ ଲୁଚାଇ ପାରିଲେ ନାହିଁ ।

ଦେବଦାରୁର ଅନ୍ଧାରରୁ ଉଡ଼ିଆଇ ହସ ଝଟ ଝଟ ମଲ୍ଲୀବଗିଚା ଉପରେ ଭାସିଲି, ପବନରେ ଭାସି ଭାସି ଯେପରି ସେ ଅନ୍ଧାର ଘରର ଝରକାବାଟେ ଆସି ପହଞ୍ଚିଗଲି ।

ତା'ର ଟିକି ମୁହଁଟିକୁ ଦୁଇ ହାତରେ ମୁଁ ଟେକି ଧରିଲି । ସୁନ୍ଦର, ଆହା କେଡ଼େ ସୁନ୍ଦର, ସୁନା ଭଉଣୀଟି ରେଣୁକା ।...

ନା, ପବନ ଅଟକି ରହିନାହିଁ । କେତେ ଦୂରରୁ ଦୂରରୁ କେତେ ଢେଉ ଆସି ବାଜେ । କେତେ ସୁରଭି, କେତେ ଅଧ ଭିଆଣ ସ୍ୱପ୍ନ । କେତେ ଭୁଲିଲା ନ-ଭୁଲିଲା ସ୍ୱପ୍ନ ।

ନିଜକୁ ପାସୋରି ପକାଇଲି ।

ନିଦ ହେଲା ।

ସ୍ୱପ୍ନରେ ଦେଖିଲି, ଅସ୍ପଷ୍ଟ ଅନ୍ଧାରରେ ମୋ'ର ମୁହଁ ସାମ୍ନାରେ ଖୁବ୍ ଉଚ୍ଚ ହୋଇ ଗୋଟିଏ ଦେଉଳ । ମୁଁ ଖାଲି ଚକ୍ଷୁ ଉପରକୁ ଦେଖୁଛି । କେତେ ଉଚ୍ଚରେ ତା'ର ଚୂଡ଼ା ।

କବାଟ ଫିଟିଲା । ଏକା ଗୁହାଁଣୀରେ ଗୋଟିଏ ପାଖକୁ ମୁଁ ଚାହିଁ ରହିଛି । କେଜାଣି କେତେ ନାରୀମୂର୍ତ୍ତି ଚାଲିଛନ୍ତି । ମୂର୍ତ୍ତି, ଅସ୍ପଷ୍ଟ ଅନ୍ଧାରରେ କେବଳ ଚଳନ୍ତି ପ୍ରତିମା । ମୁହଁରେ ଆବରଣ, ହାତରେ ଦୀପ । ଅନ୍ୟମନସ୍କ ହେଲାପରି ସେହିଆଡ଼କୁ ଅନାଇଁ ଚାହିଁ ଚାହିଁ ଦେଖୁଥିଲି । ସେମାନେ ଦୁଆର ପାଖ ହେଲେ । ହଠାତ୍ ତାହାରି ଭିତରୁ ଜଣେ—କିଏ ସେ ଜାଣେ ନାହିଁ—ଧାଡ଼ିରୁ ଭାଙ୍ଗି ମୋ'ରି ପାଖକୁ ଚାଲିଆସିଲା ।

ଚାଲିଆସିଲା ମୋ'ରି ପାଖକୁ ।

ମୁହଁରେ ଆବରଣ, ହାତରେ ଦୀପ, ହଠାତ୍ କଅଁଳ ହାତରେ ମୋ ହାତକୁ ଧରି ପକାଇଲା । ଆସ୍ତେ ଝିଙ୍କିଲା ।

କହିଲା, "ଆସ" ଯେମିତି ମୋ'ର ବହୁଦିନର ଚିହ୍ନା—ଅତି ଆପଣାର; କିନ୍ତୁ ଚିହ୍ନି ପାରିଲି ନାହିଁ ।

ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇ ଚାହିଁ ରହିଲି !

ତା'ପରେ ଆସିଲା ପବନ, ଅନ୍ଧାର ନିଭିଗଲା । ତାରା ନିଭିଗଲେ । ସ୍ୱପ୍ନ ମିଳାଇଗଲା ।

ସ୍ୱପ୍ନଁ ଦେଖିଲି ଘର ଭିତରେ ଜହ୍ନ ଆଲୁଅ ଆସି ପଡ଼ୁଛି । ମୋ'ର ଅତି ପାଖରେ ବସି ପଡ଼ିଛନ୍ତି ଭଉଜବୋଉ, ଆଉ ଦୁଇ ହାତରେ ମୋ'ର ମୁହଁକୁ ଧରି ହଲାଉଛନ୍ତି । ଭାରି ଆରାମ ଲାଗିଲା, କିଛି ନ କହି ମୁହୂର୍ତ୍ତେ ରହି ମୁଣ୍ଡ ଏପାଖ ସେପାଖ ଝାଙ୍କିବାର ସୁଖ ଅନୁଭବ କଲି । ନିଃଶ୍ୱାସଟିଏ ମାରି ତାଙ୍କର କୋଡ଼ରେ ମୁହଁକୁ ଭୁଷି ସ୍ଥିର ହୋଇ ଶୋଇଲି ।

ମୁଣ୍ଡ ଉପରେ ଆଙ୍ଗୁଠି ଖେଞ୍ଚି ଖେଞ୍ଚି ସେ କହିଲେ—

"କ'ଣ ପିଲାଟିଏ ପରି ଭୁମାଡାନ ହୋଇ ଶୋଇଛ ମ, ଉଠିବ ନାହିଁ କି ?"

"କାହିଁକି ?"

"ଭାତ ପଖ ତେଣେ ଥଣ୍ଡା ହେଲା—"

"ଭାତ ନ ଖାଇଲେ—?"

ଧଡ଼୍ କରି ଉଠିପଡ଼ି ମୋର ହାତକୁ ଓଟାରି ଦେଇ ସେ କହିଲେ, "ହଁ ନ ଖାଇବେ ଗୋ ନ ଖାଇବେ—ଉଠ ଉଠ ।"

ମୋ'ର ସ୍ୱପ୍ନ ଭାଙ୍ଗିଥିଲା ।

ବେଳେ ବେଳେ ମନେହୁଏ ସ୍ୱପ୍ନ ବୋଲି ଗୋଟାଏ କିଛି ନାହିଁ । ସ୍ୱପ୍ନ ବାସ୍ତବ, ବାସ୍ତବ ସ୍ୱପ୍ନ, ସବୁ ମିଶି ମିଳାଇଯାଏ ସେ ଦୂର ଚକ୍ରବାଳସ୍ଥ ସେପାରିରେ । କେବଳ ଅନୁଭୂତି, ସେହି ଅନୁଭୂତିର ରୂପାନ୍ତର ସୃଷ୍ଟି କରେ ଚିତ୍ତ ମଧ୍ୟରେ ଅବସ୍ଥିତିର ଇନ୍ଦ୍ରଧନୁ, ତାହାର ବର୍ଣ୍ଣ ପ୍ରକର୍ଷରେ ସ୍ୱପ୍ନ ବାସ୍ତବ, ବାସ୍ତବ ସ୍ୱପ୍ନ । କେତେବେଳେ କହେଁ ନେତି, ନେତି, ପୁଣି କେତେବେଳେ କହେ ସୋଽହମ୍ ।

ଏହିପରି ଦିନ କଟୁଥିଲା । ସମୟର ମାପ ମୁଁ ରଖି ନାହିଁ, ନରେଳାରେ ଅକର୍ମା ହୋଇ ବସି କେବଳ ଚିନ୍ତା ଆଉ ଅନୁଭୂତିରେ ଡୁବିଳେଇଡୁବିଳେଇ କିଏ ବା ରଖେ, ମୁଁ ରଖନ୍ତି ? ସକାଳୁ ଉଠି ଦେଖେଁ ଘଣ୍ଟା ଟିକଟିକ୍ ବାଜୁଛି, ଏଇ ଛଅଟା ବାଜିଲା । ତା'ର ଫଳକ ଉପରେ ଘଣ୍ଟାର

କଳାକାଠି ଏପାଖୁ ସେପାଖ ବୁଲି ବୁଲି ଯାଏ । ଏଇ ପରି ମଣିଷର ସମସ୍ତ ମାପ । ଆଜିର ଛଅଟା କାଲିର ଛଅଟାରେ ପୂର୍ଣ୍ଣ ହୁଏ । ଆଜିର ସୂର୍ଯ୍ୟ ପୁଣି କାଲି ପୂର୍ବ ଆକାଶରେ ମା' କୋଳରୁ କୁଦା ମାରେ । ସେଇ ହୁଏ ସମୟର ଗତି ।

କିନ୍ତୁ, ପରିବର୍ତ୍ତନ ଯାହା ଆଖିରେ ପଡ଼େ ନାହିଁ, ତାହା ପକ୍ଷରେ ସମୟ ସ୍ଥିର ।

ପରିବର୍ତ୍ତନରେ ଯାହାର ବିଶ୍ୱାସ ନାହିଁ, ତାହା ପକ୍ଷରେ ସମୟ ସ୍ଥିର ।

ବେଳେ ବେଳେ ସେଇ ଅନାଦି ଅନନ୍ତ ଅପରିବର୍ତ୍ତିତମୟ ମହାକାଳକୁ ବସି ଧ୍ୟାନ କରେଁ, ତାହାର ଭିତରେ କାଳି ଏବଂ ମୋ'ର ଭବଅନୁଭୂତିର ଜୀବନ ।

ସେଇ ଧ୍ୟାନରେ ମୋ'ର ଆତ୍ମା ମହାଶୂନ୍ୟକୁ ଉଠେ, ବିଶାଳ ଆକାଶର ଅସୀମ ବିସ୍ତୃତିକୁ କ୍ଷୀଣ ଧୂପ ଧୂଆଁ ପରି ।

କଳ୍ପନାର ଇନ୍ଦ୍ରଧନୁରେ ସେ ମଧ୍ୟ ହୁଏ ବର୍ଣ୍ଣର କ୍ଷୁଦ୍ର ବିନ୍ଦୁ ।

ତା'ର ସତ୍ତା ଆଉ ପାଏ ନାହିଁ ।

ସେଦିନ ରେଣୁକାର ଚିଠି ଆସିଥାଏ ଭାଉଜବୋଉଙ୍କ ପାଖକୁ, ତାହାର ଭିତରେ ଦୁଇ ଆଙ୍ଗୁଳି ଚଉଡ଼ା ଚାରି ଆଙ୍ଗୁଳି ଲମ୍ବା ମୋ' ପାଖକୁ ମଧ୍ୟ ଖଣ୍ଡିଏ ଚିଠି—

"ସାଧୁଭାଇ,

ଅପା ଲେଖିଥିଲି ତୁମେ ସେଠି ଅଛ । ସବୁଠିକି ଯିବାକୁ ତୁମର ବେଳ ଅଛି, ଆମ ଘରକୁ ଆସିବାକୁ ବେଳ ନାହିଁ । ବାପା କେତେ କହୁଥିଲେ, ସାଧୁ ବୋଧହୁଏ ଆସିବ । ବୋଉକୁ ଜର ଛାଡ଼ୁ ନାହିଁ । ଆଉ ଚିଠି ଦଉନା, ତୁମେ ତ ବଡ଼ଲୋକ । ମୁଁ ଭଲ ଅଛି, ବଡ଼ବଡ଼ ଗୁଣ୍ଡା ଖାଇବ । ଇତି । ରେଣୁକା ।"

ଭଜକବୋଜ କହିଲେ, "ଆସ ସାଧୁ, ତୁମେ ଆଜି ବଡ଼ ବଡ଼ ଗୁଣ୍ଡା ଖାଇବ, ସ୍ୱୟଂ ରେଣୁକା ଦେବୀଙ୍କ ହୁକୁମ୍ ।"

ମୁଁ କହିଲି, "ହୁକୁମ୍ ଜାରି କରେଇବାକୁ ରେଣୁକା ଦେବୀ ତ ଏଠି ଉପସ୍ଥିତ ନାହାନ୍ତି—"

ସେ କହିଲେ, "ନିଶ୍ଚୟ ଅଛନ୍ତି, ମୁଁ ତାଙ୍କର ପ୍ରତିନିଧି, ଅତଏବ ସାଧୁବାବୁ, ଶୀଘ୍ର ପ୍ରସ୍ତୁତ ହୁଅ ।"

ନିଶ୍ଚିନ୍ତ ହୋଇ ବସି ଶଠି ସ୍ୱଣ ଆଙ୍ଗୁଳ ନଠେଇ ନଠେଇ ଦେଖୁଥିଲି, ହାତଟା ଧରି ଟିକେ ନେଇଗଲେ ଘାଟ ଖାଇବାକୁ ।

ଗୋଜାତିର ଭାଷା ଗୋଜାତି ବୁଝେ । ସ୍ତ୍ରୀଜାତିର ଭାଷା ସ୍ତ୍ରୀଜାତି ବୁଝନ୍ତି ।

(କିନ୍ତୁ ଆମେ ବୁଝିପାରୁ ନାହୁଁ, ହାୟ ମଣିଷ !)

ଖାଇ ବସି ବସି ମୁଁ କହିଲି, "ପ୍ରକୃତରେ ଭଜକବୋଜ, ବହୁତ ଦିନ ହେଲା ମୁଁ ଆସିଲିଣି, ଯିବାକୁ ବେଳ ହେଲଣି ବୋଧହୁଏ ।"

"ହିଁ ଖାଲି 'ବୋଧହୁଏ' 'ବୋଧହୁଏ' କରି କଟିଯିବ, ନୁହେଁ ସାଧୁ ? ଓଃ ବୋଧହୁଏ !" ହସି ହସି ଗଡ଼ିଗଲେ ।

"ନାଇଁ ସତରେ ।"

"ହଉ, ଭାଇଙ୍କ ଆଗରେ କହିବ ସେ ସବୁ କଥା । ବାଜେ କଥାରେ କ'ଣ ଅଛି, ରେଣୁଟି ଆମର ଭଲ ଭଲ ପିଲା ।"

"ଠିକ୍ ତମରି ପରି ।"

"ରେଣୁକୁ ଆମର କୌଣସି କାମରେ କେହି ଜିତିପିବେ ନାହିଁ ।"

"ନା, ଜିତିବେ କେମିତି—ଗାଁର ମାଟି— ।"

"ସେଇ ଗାଁର ମାଟି ମୁହଁରେ ବୋଳି ତୁମେ ଧନ୍ୟ ହୁଅ ।"

"ତା'ହାଲେ ମୁଁ ବି କରିଛିଲି କଲମ ହାଣ୍ଡି ଦୁଆତ, ଆଜ ଗୋଷଇଘର କଟରି ଖୋଲିବ ।"

ମୁଣ୍ଡ ହଲେଇ ହଲେଇ କହିଲେ, "ବାଜେ କଥା—ବାଜେ-କଥା, ରେଣୁକା ତୁମକୁ ଠିକ୍ ମଣିଷ କରିଦେବ ।"

ହସି ହସି ଫାଟିପଡ଼ି ପୁଣି ସେ କହିଲେ, "ଅର୍ଥାତ୍ ରେଣୁକାକୁ ତୁମେ ବାହା ହୁଅ ।"

ମୁଁ ବି ହସିଲି, ମୋର ହସ ହେଲା ନାହିଁ । ଯେପରିକି କଲେଜ ଘଣ୍ଟାରେ ଠାଇଁ ଠାଇଁ କରି ଚପରାସୀ ଘରିଘଣ୍ଟା ପିଟିଲା, ଆଉ ମାଡ଼ଗୁଡ଼ାକ ପଡ଼ିଲା ଠିକ୍ ମୋର ଛାତିରେ ।

"ଦେଖ ଭାଇଜି, ତମେ ଏମିତି ଚିଡ଼ାଅ ନାହିଁ, ନଇଲେ ମୁଁ ଆଉ କଥା କହିବି ନାହିଁ ତୁମକୁ ।"

ମୋ ପଛରେ ଗୋଡ଼େଇ ଗୋଡ଼େଇ ସେ ଖାଲି ବକିଲେ ।

"ଯଥା ରାବଣସ୍ୟ ମନ୍ଦୋଦରୀ—"

"ହଉ ପଛେ ତମ ରେଣୁକା ମନ୍ଦୋଦରୀ, ମୋର ରାବଣ ହେବା ଲୋଡ଼ା ନାହିଁ…"

"ନାହିଁ ନାହିଁ, ଶୁଣ, ସୁନା ଭାଇଟି ପରି, ରାଧୁ—ସୁନା ଭାଇଟି ପରି—ସୁନା—"

ନିହାତି ବିରକ୍ତ କଲେ । ବୁଲି ପଳେଇଲି—

କ'ଣ ନ କହିଲେ ସେ ! ଭାବିଲି ।

କାହିଁକି ଲୋକେ ସ୍ୱପ୍ନ ଭାଙ୍ଗିଦିଅନ୍ତି ଜାଣେ ନାହିଁ, ତଥାପି ଲୋକେ ସ୍ୱପ୍ନ ଭାଙ୍ଗିଦେବାକୁ ଭଲ ପାଆନ୍ତି ।

ଯେ ଯାହାକୁ ଯେତିକି ଭଲ ପାଏ, ସେ ତାକୁ ସେତିକି କଷ୍ଟ ଦେଇ ତୃପ୍ତ ହୁଏ । ତେଣୁ ସେ ତା'ର ସ୍ୱପ୍ନ ମୂଳରେ କୁର୍‌ହାଡ଼ ମାରେ । କିନ୍ତୁ ଏ ନାରୀଜାତି ! ଏମାନେ କେବଳ କଷ୍ଟ ଦେଇ ନିରସ୍ତ ହୁଅନ୍ତି ନାହିଁ । ଏମାନେ କଷ୍ଟ ଦେଇ କଲବଲକୁ ନିରେଖି ଅନାନ୍ତି, ତେଣୁ ମଣିଷ କଷ୍ଟ ବି ପାଏ, ଆଉ ପରାଜୟ ଭୋଗେ ବେଶି ।

ଆଜି ବିଶ୍ଳେଷି ଦେଖୁଛି, ରେଣୁକାକୁ ମୋ ସହିତ ବିଭା ଦେବାପାଇଁ ତାଙ୍କ ଭିତର ମନ ଯେତେ ବ୍ୟାକୁଳ ହୋଉ ନ ଥିଲା, ତାଙ୍କର ସନ୍ଧାନୀ ସୂକ୍ଷ୍ମଦୃଷ୍ଟି ମୋର ସ୍ୱପ୍ନକୁ ସନ୍ଧାନ କରି ତାକୁ ହସି ଉଡ଼େଇ ଦେବାପାଇଁ ସେତେ ଉତ୍ସୁକ ଥିଲା ।

ମନେ ମନେ କଳ୍ପନା କଲି, ରେଣୁକାକୁ ମୁଁ ବିଭା ହେଉଛି— କିନ୍ତୁ ମୋ ଚେତା ମନର ସଂସ୍କୃତ ପ୍ରତିବାଦ କରିଉଠିଲା ।

'ସୁନା ଭଉଣୀଟି ରେଣୁକା !'

ମୁଁ ତା'ର ପିଠି ଆଉଁସିଲି, ମୁଣ୍ଡ ଆଉଁସିଲି, ମୁହଁଟି ଟେକି ଧରି କହିଲି, "ଆହା !" ସେ ଚାହିଁ ଚାହିଁ ହସିଲା, ମନର ସଂସ୍କାର ସାମାନ୍ୟରେ ମୁହଁ ବୁଲେଇ ନେଲା, ଭାରି ଆନନ୍ଦିତ ହେଲି, ତା'ର ଓଠାକୁ ଚାହିଁ ରହିଲି, ସବୁ ପାସୋରି ପକାଇଥିଲି । କ୍ରମେ ଚେତନ ମନ ଚେଇଁଉଠିଲା—ତଲ୍ୱାର ଧାର ଭଳି ବାଟ ଧରିଲା । "ଏଁ ବିବାହ ! କିଏ ବିଭା ହେବ ?" ସ୍ୱପ୍ନର ଧାର କେଉଁଠି ଛିଣ୍ଡି ଗଲା । ମନରେ ଭାରି କଷ୍ଟ ହେଲା, "କେଡ଼େ ଅପସନ୍ଦ କଥା ବିବାହ । ଏତେ ଶୀଘ୍ର ! କେଡ଼େ ଅମୂଳକ— ।"

ଅମୂଳକ ଅମୂଳକ ବୋଲି ରେଣୁକା ସହିତ ବିବାହ ମୁଁ ଭାବିଗଲି । କେତେ କଳ୍ପନା ମନରେ ଆସେ, କେତେ ସୁଖର କଳ୍ପନା, ପୁଣି ଅମୂଳକ ଅମୂଳକ ବୋଲି ମୁଁ ହସି ଉଡ଼ାଇଦିଏଁ । ବୈପରୀତ୍ୟ ସୂତ୍ରରେ ସେହି ମିଳନ ସୁଖକୁ ହୃଦୟେ ହୃଦୟେ ବୁଝେ—

କିନ୍ତୁ, ପୁଣି ମନରେ ଆଘାତ ଲଗେ, ଦେଖେଁ, ଆଦର୍ଶର ଅସୀମତା ଭୁଲିଯାଇ ସେ ରୂପ ପରିଗ୍ରହ କରିଛି । ଭବିଷ୍ୟତକୁ ଚାହିଁ ଦେଖେଁ, ଆକାଶ ସେ କୋଣରେ ରହିଛି କଳା ମେଘର ଦରିଆ, ମନ ଦବିଯାଏ ।

ବେଳ ଗଡ଼ିଲେ ମୁଁ ଭୁମାତାନ ଏକୁଟିଆ ପ୍ରାୟ ସବୁଦିନେ ବୁଲି ବାହାରେ ।

ଅଳ୍ପ ଦୂରରେ ଦୁଇ ତିନ ଘର ବସ୍ତି, ତା’ ସେ ପାଖକୁ ଖଣ୍ଡେ ଦୂରକୁ ସରୁ ହୋଇ ଗୋଟିଏ ଝରଣା ପଥର ଉପରେ ଡେଇଁ ଡେଇଁ ତଳକୁ ଗଡ଼ିଆସି ସମତ୍ତଳରେ କିଛି ଦୂର ବହିଯାଇଛି । ଝରଣା ସେପାଖେ ଅଳ୍ପ ଉଞ୍ଚ ଧାଡ଼ ଧାଡ଼ ବଣ, ତାହା ପଛକୁ ଗୋଟିଏ ଟାଙ୍ଗର ପାହାଡ଼, ତା’ ସେପାଖେ ଖାଲ ଉଠିପଡ଼ ଭୂଇଁ, ଖାଁ ଖାଁ ।

ସେଇ ଝରଣା କୂଳରେ ନଇଁଛିଆରେ ଖଣ୍ଡେ ଉଞ୍ଚ ପଥର ଉପରେ ମୁଁ ବସେଁ, ପଥୁରିଆ ଝରଣାର ଶୋଭା ଦେଖେଁ, ଆଜ ଦେଖେଁ ତା’ ସେପାଖେ ସୂର୍ଯ୍ୟାସ୍ତ ।

ଦୂରରେ ଆକାଶ ନଇଁପଡ଼େ ସେଇ ତେଜ ତେଜକା ଭୂଇଁ ଉପରେ । ଜନମାନବର ଶବ୍ଦ ନାହିଁ, କୋଳାହଳ ନାହିଁ, କେବଳ ନିର୍ଜନତା ।

ଗହ୍ୱର ଝରଣା କୂଳରେ ବସି ତଳକୁ ଚାହେଁ । ତଳକୁ ଖୁବ୍ ବଡ଼ ବଡ଼ ଗଛ, କେତେ କାଳର ପୁରୁଣା, ଧାଡ଼ ଧାଡ଼ ହୋଇ ଚମ୍ପାଗଛ କେତୋଟି ଅଛି । ଅଶ୍ୱତ୍ଥ ପତ୍ର ଉଞ୍ଚ, ପୁରାତନ ବରଗଛ ପତ୍ର ତା’ର କାଣ୍ଡ ।

ଚମ୍ପା ଫୁଲର ବାସ୍ନାରେ ଯେତେବେଳେ ପବନ ନଦୁଆଳ ଲାଗେ, ତଳେ ପଥୁରିଆ ଝରଣାର ଜଳପ୍ରପାତର ଧୋବ ପାଣିର ଶଙ୍ଖ ପାହାଚ ଉପରେ ଅସ୍ତ ସୂର୍ଯ୍ୟର ରଙ୍ଗ ଝଞ୍ଜ ହୋଇପଡ଼େ, ଗୋପନ ରହସ୍ୟ ଲୁଚାଇ ସତେକି ପ୍ରକୃତି ସ୍ଥିର ହୋଇ ରହେ, ନିଜ ମନର ରହସ୍ୟ କିଛୁ କିଛୁ ମୋର ଚିନ୍ତାର ଧାରା ସୀମା ଭାଙ୍ଗି ଅସୀମକୁ ଚହଟି ଚାଲିଯାଏ । କିଛି ସମାଧାନ କରିପାରେଁ ନାହିଁ । ଦିନ ସରେ ।

ଆରପାଖ ଜଙ୍ଗଲର ମୁଣ୍ଡ ଉପରେ ସତେକି ସେ ଦୂର ପ୍ରାନ୍ତର ସେପାଖେ ନାଲି ହୋଇ ସୂର୍ଯ୍ୟ ତଳକୁ ଖସିପଡ଼େ । ସନ୍ଧ୍ୟା ହୁଏ ।

ସେଇ ସଞ୍ଜର ନଗେଳାରେ ଝରଣା କୂଳରେ ବସି ଅନେକ ଥର ମୁଁ ଆଗକୁ ପଛକୁ ଚାହିଁ ଦେଖିଛି, କେତେବେଳେ ସ୍ୱପ୍ନ ଦେଖିଛି, କେତେବେଳେ ବା ଦେଖିଛି ଜାଗ୍ରତ ଭବିଷ୍ୟତ୍‌ଟାକୁ, ବସ୍ତୁବାଦୀର ଦୃଷ୍ଟିରେ ।

ଝରଣାର ପାଣିରେ ମୋ'ର ଅସ୍ପଷ୍ଟ ସ୍ୱପ୍ନ ଭାସି ଭାସି ଯାଏ, ତା'ର ଅବଶ୍ରାନ୍ତ କଳକଳ ଯେପରି ଶବ୍ଦ ପଛରେ ଧ୍ୱାନ୍ତ ଶରନ୍ତନ ମହାକାଳର ପୃଷ୍ଠପଟ ।

ଯାଏ ରେଣୁକା, ଯାଏ କାଞ୍ଚନମାଳା, ଯାଆନ୍ତି ଆଜ କେତେ ଦେଖା ଅଦେଖା, କେତେ ମୋ'ର ମରମଭାବର ପ୍ରଚ୍ଛଦପଟ, କେତେ ମୋ'ର ଉଦ୍ଦାମ ରକ୍ତର, ମାଂସର, ଯୌବନର ।

ସେହିପରି ଥରେ, ପାଷାଣ ହୋଇ ବସି ମୁଁ ଭାବୁଛି, କେହି କୁଆଡ଼େ ନାହିଁ, ସୂର୍ଯ୍ୟ ଅସ୍ତ ଯାଉଛି, ତଳ ଝରଣାର ଚବ୍‌ଚବ୍ ଶୁଣି ରହିଛି ।

ପନ୍ଦର ଷୋଳ ବର୍ଷର ଝିଅଟିଏ, ଛେଷ୍ଟ ପିଠା ଚକ୍‌ଚକ୍ ପିଠି ଆଉ ହାତଗୋଡ଼, ପାଣିରେ ଯେ ନଇଁପଡ଼ୁଥାଏ, ତା'ର କଳା ଖୋଷାରେ ପେନ୍ଥାଏ ବଣଫୁଲ, ଘରମାନେ ଝରଣାରେ ପାନ ବଡ଼ କେତେ ଭଉଁରୀ । ରହିଁ ରହିଲି, ନିର୍ଜନତା ଭିତରେ ସେ ମଧ୍ୟ ଗୋଟିଏ ଶ୍ରେଷ୍ଠ ନିର୍ଜନ ଛବି ।

କ୍ରମେ ସେ ପାଣିରେ ବସିଲା, ଆନ୍ତର ଶରୀରର ହାତଗୋଡ଼ ଚକ୍‌କଣ କରି ଧୋଇଲା, ପାଣିରେ ଭାସିଲା, ବୁଡ଼ିଲା, ସଙ୍କୋଚ ନାହିଁ, ଭୟ ନାହିଁ, ସଚେତ ନିର୍ଜନତା ଭିତରେ ସେହି ଏକା ସେଠି ।

ପ୍ରଥମେ ଆମୋଦ ଲାଗିଲା, କ୍ରମେ କୁତୂହଳରୁ ଆସିଲା ନିର୍ଜନତାର ଆକର୍ଷଣ, ତା'ର ପ୍ରତ୍ୟେକ ଅଙ୍ଗଭଙ୍ଗୀ ଲକ୍ଷ୍ୟକରି ରହିଲି ।

କିଛି ସମୟ ପରେ ଉପରକୁ ଅନାଇଁ ସେ ମୋତେ ଲକ୍ଷ୍ୟକଲା । ପାଣିରେ ଥାଇ ପ୍ରଥମେ ଛାତି ଉପରେ ଲୁଗାଟି ଟାଣି ବାନ୍ଧିହେଲା, ତା'ପରେ ଏପାଖ ସେପାଖ ଅନାଇଁ ଦେଖିଲା, ଭୟବିହ୍ୱଳ ଆଖିରେ । ଖାଲି ଝରଣାର କଳ କଳ । ତଳେ ସେ, ଉପରେ ମୁଁ । ପାଖରେ କେହି ନାହିଁ । ଦୂରରୁ କାହାର ଯୋଉ ଶବଦ ନାହିଁ । ତା'ପରେ ପୂର୍ବ ସ୍ୱାଧୀନତାକୁ ସାମାନ୍ୟରେ ଫେରାଇ ଆଣି ତା'ର ପାଣିଖେଳରେ ସେ ମନ ଦେଲା ।

କଳ କଳ ପାଣି ମୁହଁରେ ଧରି ଫୋପାଡ଼େ, ମୁହଁ ହାତ ଚକ୍‌କଣ କରି ସେ ଧୁଏ, ପାଣିରେ ବସିଥାଏ, ଯେପରି ସେ ମୋ'ର ଅସ୍ତିତ୍ୱ ଭୁଲି-ଯାଇଛି । ଜାଣି ଜାଣି ମୁଁ ମୁହଁ ବୁଲାଇ ନିଏଁ । ଖୋଜିଲା ଖୋଜିଲା ଚଞ୍ଚଳ

ଗୁହାଁଣୀରେ ସେ ଏପାଖକୁ ଥରେ ଦେଖେ, ପୁଣି ଅପ୍ରସ୍ତୁତ ହୁଏ, ହସ ଓଠୋକ ନେଇ ପାଣିରେ ହିଁ ମନ ଦିଏ । ଆଲୁଅ ମଳିନ ହେଉଣୁ ନ ହେଉଣୁ ପାଣିରୁ ଉଠି ଖଣ୍ଡେ ପଥର ସେପାଖେ ଆଡ଼ ହୋଇ ସେ ଠିଆ ହେଲା, ଲୁଗା ପାଲଟିଲା । ତନ୍ମୟ ହୋଇ ମୁଁ ତାକୁ ଲକ୍ଷ୍ୟ କରୁଥିଲି, ଦେଖୁଥିଲି ତା'ର ଗୁଇ ଅନ୍ଧାରମିଶା ଆକୃତିର ସଙ୍କେତ ।

ଝରଣାରୁ ଉଠିଲା, ଏକମୁହାଁ ହୋଇ ଚାଲିଗଲା, ଯେପରି ସେ ମତେ ଦେଖିନାହିଁ ।

ମୁଁ ମଧ୍ୟ ତାହାପରେ ବସି ରହିଲି, ମୁଁ ବି ଯେପରି ତାକୁ ଦେଖି-ନାହିଁ ।

ସେ ଚାଲିଗଲା, କିନ୍ତୁ ସେହି ଝରଣା ଜଳରେ ରଖିଗଲା ଗୋଟିଏ ବସ୍ତୁ-ଆଦର୍ଶମିଶା ସ୍ମୃତି, ଯାହା ମାଟିର, ପୁଣି ପବନର, ତାହା ଆଦର୍ଶ ନୁହେଁ । ଆଦର୍ଶଠାରୁ ଅତଶସ୍ତ ଖର୍ବ । ଅସ୍ପଷ୍ଟ ଭବିଷ୍ୟତ୍ ନୁହେଁ, ଅତି ପରିସ୍ଫୁଟ ବର୍ତ୍ତମାନ । ତା'ର ଧ୍ୟାନରେ କବିତାର ଉଗ୍ର ଉପରକୁ ଉଠିଲା ନାହିଁ, କେବଳ ରକ୍ତ ମାଂସ ଛଟପଟ ହେଲା । ସେହି ଚିନ୍ତାରେ ଚିରନ୍ତନ ଆଦର୍ଶର ବନ୍ଧନ ନ ଥିଲା, କେବଳ ସାମୟିକ ସନ୍ତୋଷ ଓ ଫଳପ୍ରାପ୍ତିର ଆକାଙ୍କ୍ଷା ଥିଲା । ତେଣୁ ତାହା ପାପ ।

ସେହି ପାପର ପ୍ରେତ ସନ୍ଧ୍ୟାର ନିର୍ଜନତାରେ ମନକୁ ଆଚ୍ଛନ୍ନ କରି ରଖିଲା ।

ପାପ, ସେ—ରକ୍ଷଣଶୀଳ । ସେ ସ୍ଥିତିମୂଳକ ।

ଆଜି ଭାବୁଛି, ସେହି ପାପ ହିଁ ପ୍ରତି ମୁହୂର୍ତ୍ତରେ ଚନ୍ଦ୍ରାକୁ ଆକାଶରୁ ଆଣି ପୃଥିବୀରେ ବାନ୍ଧେ, ପରକାଳର ବନ୍ଧନମଧ୍ୟରେ ଇହକାଳରେ ସ୍ଥିତ ଦିଏ, ଅମରକୁ ମରଣଶୀଳ କରେ, ଦିବ୍ୟଦୃଷ୍ଟି ହଜାଇ ଦେଇ ଦିଏ ଜଡ଼ବାଧା ମାୟା ।

ସେହି ପାପର ପ୍ରତିକୃତି ଆତ୍ମାକୁ ଦେହରେ ବାନ୍ଧେ । ତାହାର ଧୂଆଁରେ ବର୍ଷା ହୁଏ । ଖତ କାଦୁଅ ପଚ୍ ପଚ୍ କ୍ଷେତରେ ଧାନ ଗଜୁରି ଉଠେ, ଗଛ ହୁଏ, ଫସଲ ପାଚେ, ପୁଣି ଝଡ଼ିପଡ଼େ ଶୁଖିଲା ମାଟି ଉପରେ ।

ସେଇ ଝରଣାର ଧୋବଲା କାଳିଆ ପାଣିରେ ମୋ'ର ସ୍ୱପ୍ନ ଆଦର୍ଶର ଅସ୍ପୃଷ୍ଟ ପରାଜୟ ପାଇ ବୁଡ଼ି ମରିଥିଲା ।

ସେଦିନ ରାତିରେ, ମୁଁ ତାକୁ ସ୍ୱପ୍ନ ଦେଖିଥିଲି ।

ଛି, ଛି ।

ତହିଁ ପରଦିନ ପୁଣି ସଞ୍ଜରେ ମୁଁ ସେଠିକି ଗଲି । ଆଗରୁ କିଛି ସାତ ପାଞ୍ଚ ଭାବି ଯାଇ ନାହିଁ, ଧାରଣା ମଧ୍ୟ କରି ନାହିଁ ପୁଣି ସେଠିକୁ ସେ ଆସିବ । ଆପେ ଆପେ ସେଇଠି ଯାଇ ପହଞ୍ଚିଲି । ପହଞ୍ଚି ଭାବିଲି, ନିରୋଳା ଚିନ୍ତା ପାଇଁ ଏ ସ୍ଥାନଟି କେଡ଼େ ସୁନ୍ଦର !

ଅନ୍ୟମନସ୍କ ହୋଇ ବସି ବସି ବେଳ ବୁଡ଼ିବା ସମୟ ହେଲା । କୌଣସି ବିଶିଷ୍ଟ ବିଷୟରେ ଧ୍ୟାନ ନ ଥିଲା ।

ଖସ୍ ଖସ୍ ହୋଇ ଗୋ'ରୁଟାଏ ଏପାଖୁ ସେପାଖକୁ ଚାଲିଗଲା, ଜାଣିପାରି ନ ଥିଲି, ଛନ ଛନ ହୋଇ ପଛକୁ ଚାହିଁ ଦେଖିଲି, ପୁଣି ଭୂମିତାନ ବସି ରହିଲି ।

ଆହୁରି ଥରେ ଦୁମୁ ଦୁମୁ ପାଦ ଶବ୍ଦ ଶୁଣି ଚାହିଁ ଦେଖିଲି । ଏଥର ସେ । ଆବିଷ୍ଟ ମନରେ ଅନାଇଁ ରହିଲି । ପ୍ରତିକ୍ଷମାଣ ଚେତନା । ରକ୍ତର ଗତି ଦ୍ରୁତ । ଚୋପନ ମନରେ ପାପର ସ୍ଫୁଲିଙ୍ଗ । ଚେତନ ମନରେ ସଂସ୍କାରର ବନ୍ଧନ ।

ଚାହିଁ ଦେଖିଲି, ସେଇ ନିର୍ଜନତାର ଆତ୍ମା ଯେପରି ରୂପ ଦେନ ତଳକୁ ଓହ୍ଲାଇଗଲା, ଅଚଞ୍ଚଳ ସହଜ ଗତିରେ । ତା'ର ପ୍ରତ୍ୟେକ ଭଙ୍ଗୀ ଆଖିରେ ଆଖିରେ ମୁଁ ପିଇ ଯାଉଥିଲି ବାଉଳ ଚାହାଁଣୀରେ ।

ପୁଣି ସେ ଏପାଖକୁ ଚାହିଁଲା । ପୁଣି ସେ ପାଣିକୁ ଚାଲିଗଲା, ସ୍ନାନରେ ମନ ଦେଲା । ଥାଇ ଥାଇ ପୁଣି ସେ ଚାହେଁ । ଜାଣି ନ ଜାଣିଲା ପରି ଦେହକୁ ଖେଳାଏ । ନିଜର ଯୌବନରେ ନିଜେ ବିହ୍ୱଳ ହୋଇ ଆପଣା ସାଙ୍ଗେ ଛଟାର ଖେଳ ଖେଳେ । ପାଣି ସଙ୍ଗେ ସଚେତକ କଥା କହେ । ପାଣିକୁ ମୁହଁରେ ମାରେ, ପାଣିକୁ ଆଉଁସେ, କୁଣ୍ଢାଏ, ପାଣିରେ ଲେଟିପଡ଼େ ।

କ୍ରମେ ଯହୁଁ ଅନ୍ଧାରରେ ଆଲୁଅ ମିଶିଗଲା, ପାଣିରେ ଥାଇ ଘନ ଘନ ସେ ମୋ'ର ଆଡ଼କୁ ଚାହିଁଲା । ମୁଁ ମଧ୍ୟ ତାକୁ ଚାହିଁ ରହିଲି । କେହି କୁଆଡ଼େ ନାହିଁ, ସେପାଖ ପଦା ଭୂମି ଉପରେ ଛାଇ ପଡ଼ିଗଲାଣି । ଜଙ୍ଗଲ ଅନ୍ଧାର ଦିଶୁଛି । ତଳେ ଛଳ ଛଳ ଝରଣା । ପବନର ଗତି ନାହିଁ ।

ଯେତେ ଚାହିଁଲି, ରକ୍ତ ଆଉ ମାଂସ ସେତେ ଟାଣିହେଲା । ଭାବିଲି ତଳକୁ ଚାଲିଯିବି । ପୁଣି କି'ଣ ମୋ'ର ହାତ ଗୋଡ଼କୁ ଏକାଠି ବାନ୍ଧି ରଖିଲା । ଚିନ୍ତାରେ ମୁଁ ଗଲି, ଚିନ୍ତାରେ ମୁଁ ତାହା ପାଖେ ପହଞ୍ଚିଲି, ସବୁ ମନେ ମନେ । ଶରୀର ଅଧୀର ହୋଇ ଉଠିଲା ।

କେବଳ ଚିନ୍ତାରେ···

ବସ୍ତୁତଃ ମୁଁ ସେଠି ହିଁ ବସି ରହିଲି ।

ସେ ପାଣିରୁ ଉଠି ଆସିଲା । କୂଳକୁ ଗଲା କିଛି ନ ଜାଣିଲା ପରି, ତା'ପରେ ସିଧା ଚାଲିଗଲା ।

ଅନ୍ଧାରରେ ମନେହେଲା, ଯେପରି ସେ ମୋତେ ଚାହିଁ ହସିଦେଇ ଗଲା ।

ସେଇ ଝରଣା କୂଳରେ ଏକୁଟିଆ ବସି ରହିଲି । ରାତି ହେଲା, ଆକାଶରେ ତାରା ଝକ୍ ଝକ୍ ହେଲେ, ପ୍ରଶାନ୍ତ ଆକାଶର ତାରାବନ୍ଧା ଶାନ୍ତି ମୋ'ର ମନରେ ପଶିଲା, ଆଉ ଶୀତଳ ପବନ । ଭାବୁଁ ଭାବୁଁ କ୍ରମେ ମନର ଭ୍ରାନ୍ତି ଉଭେଇଗଲା, ଯେପରି ଉଦ୍‌ବେଗ ନାହିଁ, ଉଚ୍ଛ୍ୱାସ ନାହିଁ; କେଡ଼େ ସହଜ ଆଉ ଉତ୍ତେଜନା ଶୂନ୍ୟ—ତାରା ଆଲୁଅର ମିଟିମିଟି, ଝରଣାର କଳ କଳ, ନିସ୍ତବ୍ଧ ଅନ୍ଧାର, ଧାଡ଼ି ଧାଡ଼ି ଗଛର ଛାଇ, ତାହାରି ମଝିରେ କିଛି ସମୟ ପଥର ପାଲଟି ମୁଁ ପୁଣି ବସାକୁ ଫେରିଆସିଲି ।

ବାଟରେ ମନ ପତିଆରା ଦେଖାଇଲା, ନା ପାପ ନୁହେଁ କୌତୂହଳ ମାତ୍ର, ସଂସାରରେ ପାପ ପୁଣ୍ୟ କିଛି ନାହିଁ । ସବୁ କ୍ରିୟା ଆଉ ଫଳ; ଫଳ ଆଉ କ୍ରିୟା । ସବୁ ମଙ୍ଗଳମୟ ଏବଂ ସବୁ ପବିତ୍ର ।

ଗୋଟାଏ ଗୋଟାଏ ମୁହୂର୍ତ୍ତ, ସେ ପଥର ଉପରେ ଗାର ଟାଣେ, ଗାର କାଟେ, ଗାର ଆଞ୍ଜୁଡ଼େ । ତା'ପରେ ଭୁଲି ହୋଇ ପଡ଼ିଥାଏ ଗୁଡ଼ାଏ ଆଞ୍ଜୁଡ଼ା ଆଞ୍ଜୁଡ଼ା କଟାକଟି ଜାଲି ପରି ଛବି, ଅଳନ୍ଧୁ ପରି ମେଞ୍ଚା ହୋଇ ଲାଗି ରହେ, ଯାଃ, ସରିଲା ।

ଆଜି ମୁଁ ଭାରି ଭାରି ଆଶ୍ଚର୍ଯ୍ୟ ହେଉଛି, କେତେ କଟାକଟି ସେଠି, ଆଉ ସେ ପଥର ତଳେ ଝରଣାର ପାଣିରେ ଆକର୍ଷଣର ଅନ୍ଧାର ଗହ୍ୱର, କାହିଁ, ସେ ମନେ ନାହିଁ ତ !

ଆଉ କେତେ ଥର ସେଠିକି ମୁଁ ଖୋଜିବାକୁ ଯାଇଛି, ନୂଆ ଲୋକଙ୍କୁ ଦେଖିଲି, ତାକୁ ଦେଖି ନାହିଁ, ଅଥବା ତାକୁ ଦେଖିଛି ଚିହ୍ନିପାରି ନାହିଁ । ନୂଆ ଆଲୁଅ, ନୂଆ ସମୟ, ନୂଆ ପରିସ୍ଥିତିରେ ସେଥରର ସେ ଆଜି ସେଇପରି ହୋଇ ଦେଖାଦେଇ ନାହିଁ ।

ଛଳ ଛଳ ପାଣିରେ ମେଞ୍ଚାମେଞ୍ଚା ସ୍ତ୍ରୀଲୋକ, ମେଞ୍ଚାମେଞ୍ଚା ଲୋକଙ୍କର ମେଞ୍ଚାମେଞ୍ଚା ଖାଲି ଦେହ, ଖାଲି ବସ୍ତ୍ର ଜନ୍ମେଇଛି ଆପଣାର ପରମ୍ପରା କଥା ମନେପକାଇ, କବିତା ବଦଳରେ ଦର୍ଶନ ବଢ଼ିଲାଛି, ସେ ସେଠି ନାହିଁ ।

ଦିନ ଯାଇ ଆସିଲା, ସେଠୁ ବିଦା ହେଲି । ଭାଉଜବୋଉ ରୁମାଲରେ ଅଧର ଚାପି ଦେଇଥିଲେ, କାନ୍ଦିଥିଲେ । ମୋ ନିଜ କଥା ନ କହିଲି ବା । ହଁ, ହେଉ ଅଛି ମୁଁ କହି ଯାଇଥିଲି ତାଙ୍କ ପାଇଁ ନିଶ୍ଚୟ ଉଲ୍ କିଣି ପଠେଇ ଦେବି । ଚିଠି ଲେଖୁଥିବି । ନିଶ୍ଚୟ, ନିଶ୍ଚୟ ।

ମନଟା ବି ଶଗଡ଼ଗୁଳାରେ ଚଢ଼ି ବୁଲିବାକୁ ଭଲପାଏ, ଝିଙ୍କା-ଓଟରା ଆଉ ବଦାବଦି, ଖାଲି ଦୁଃଖ ।

କି ଅନ୍ତର ସେ, ନାଁଟା ମନେ ନାହିଁ; କିନ୍ତୁ ଏବେ ବି ନିଚ୍ଛାଟିଆ-ବେଳେ ସେ ବାସ୍ନାଟା ମନେପଡ଼େ । ସେ ସଞ୍ଜଟା ମନେପଡ଼େ । ସେଦିନ ମୁହଁପଟ ଆକାଶରେ ମେଘ ବି ନ ଥିଲା ଟିକିଏ, ଖାଲି ଫାଙ୍କା ମଉଳା ଆକାଶ, ଆଲୁଅ ମରି ଆସୁଥିଲା । ସେ ବାସ୍ନା ସାଙ୍ଗେ ସାଙ୍ଗେ ସେ ଆକାଶରୁ ଫାଳେ ଭାସିଆସେ, ଗହ୍ୱର ଗହ୍ୱର ଲୁହଟୋପାଗୁଡ଼ାଏ ପାଖକୁ ପାଖ ଲଗାଲଗି, ଭଲ ଲାଗେ ନାହିଁ ।

ଗୋଟାଏ ପରିଚ୍ଛେଦର ଶେଷ ପଟ, ସେ ଫାଙ୍କା ବାସ୍ନା ।

ନୂଆ ଆଲୁଅର ସନ୍ଦେଶ ଧରି ପୁରୁଣା ଗତି ଶେଷରେ ନୂଆ ସୂର୍ଯ୍ୟ ଉଏଁ । ଜୀର୍ଣ୍ଣ ଗତିର ସ୍ମୃତି ସୁଦ୍ଧା ମିଳେ ନାହିଁ । ଆଖି ଝଲସା ନୂଆ ଆଲୁଅରେ । ଗତି ଥିଲା, ଭଲ ଥିଲା, ଦିନ ହେଲା ସେ ବି ଭଲ । କାନ୍ତ ସଞ୍ଜର ମ୍ଳାନ ବାରୁଣୀ ଭିତରେ ଉଜ୍ଜ୍ୱଳ ଦିନର ଦୀପ ପୁଣି ହଜିଯାଏ, ଆଉ ତା'ର ପରିଚୟ ନାହିଁ ।

ସବୁ ଭଙ୍ଗା, ଆଉ ଧରି ବସିଲେ ସବୁ ଫାଙ୍କି । ଧରି ବସିବା ମନର ଭ୍ରମ, ଧରା ନ ଦେବା ସ୍ମୃତିର ସ୍ୱଭାବ ।

ଆଜି ଏ ବୃଦ୍ଧ ବୟସରେ ମନେହୁଏ କ'ଣ ? ସଙ୍କଳିତ ପ୍ରାସାଦର ବିବିଧ ସାଜସଜ୍ଜା ପରି ଜୀବନର ଉଜ୍ଜ୍ୱଳ ମୁହୂର୍ତ୍ତଗୁଡ଼ିକ ସୁନ୍ଦର ମୁହୂର୍ତ୍ତଗୁଡ଼ିକ ଏଲୋପଟ୍ଟ ସଜା ହୋଇଥାନ୍ତା । ଅତୀତ ଦିନର ଗୌରବ ଅଭିଯାନର ସବୁ ରୂପରେଖା, ଶୋଭାଉଦ୍ୟାନର ଲତା ଗୁଳ୍ମ ପରି ।

କିନ୍ତୁ ତା'ର ପରିଚୟ ନାହିଁ ।

ଆଜିର ଏ ବୃଦ୍ଧ-ସୂର୍ଯ୍ୟର ହଳଦିଆ ଆଲୁଅରେ ହଳଦିଆ କାମଳ-ବୋଳା ଦୃଷ୍ଟିହୀନ ଆଖି ଆଗରେ ନିରର୍ଥକ ପ୍ରକୃତିର ଅର୍ଥହୀନ ରୂପବିନ୍ୟାସ ବିଦ୍ରୂପ କରି କରି ଯାଏ, ଚୈତି ପବନରେ ଛିଣ୍ଡାପତ୍ର ପରି କାଲିର ସ୍ମୃତିର ଚେଉଁଳ ଆଉ କାହିଁ ? ଭିତରେ ବାହାରେ ଯେତେ ଅଗଣିତ ପରିବର୍ତ୍ତନ ତା'ର କ୍ରିୟା-ପ୍ରତିକ୍ରିୟାର ସଂଘର୍ଷଣର ଫଳାଫଳ ମଣିଷ ମନର ଭାବ-ଦର୍ପଣ । କେତେ ଛବି ଫୁଟେ; କିନ୍ତୁ ଯାହା ମଣିଷ ଦେଖେ, ତାହା ଛବିର ନୁହେଁ, ମଣିଷର ବିକୃତ ମନୋଭାବର ।

ଭାଷା, ଶବ୍ଦକର ତୁଳିର ରଙ୍ଗ, ଶିଳ୍ପୀର ବଟାଳି, କେତେ ବା ତା'ର କରାମତି ।

ଜଉକଟା ପାଖ ପରି ପ୍ରାଚୀନର ଭାବ ନୂତନର ଭାଷାପିଞ୍ଜର ଭିତରେ ଖାଲି ଛଟପଟ ହୁଏ ସିନା, ତା'ର ଗୁଞ୍ଜନ କେବଳ ସେହି ବୁଝେ, ଆଉ କେହି ନୁହେଁ ।

ସାନ୍ତ୍ବନା ! ଭାବୁକର ବିଶ୍ଳେଷଣ—ବ୍ୟର୍ଥତାର ଉପହାସ ।

ରୁକ୍ଷ ପାହାଡ଼ କଢ଼ରେ ଆଦିମ ଅକର୍ମଣିଆ ପରି, ତୁମେ ଦେଖିବ ପଥରରେ ଗାର, କେଉଁ ଗାରର କି ସଙ୍କେତ, କେତେ ବା ବତାସି କୁହୁକ ବଜ୍ରର ଇତିହାସ, କି ବୁଝିବ ଦର୍ଶକ ତାହା, ବୁଝିବ ହୁଏତ ପଥର କହିବାକୁ ଭାଷା ନାହିଁ ।

ସ୍ବପ୍ନ—ହାସ୍ୟ !

ଚୈତ୍ର କହେ ବୈଶାଖ ଶେଷର ଶୁଖିଲା ଠାଉ ଠାଉ ପୋଖରୀ-ଗର୍ଭ ଉପରେ ଯେଉଁ ଫଟା ଫଟା ଫାଟ ତା'ର ବି ମୂଲ୍ୟ ଥିଲା । ଅଳସ ଦିନର ଅକାମି ଚିନ୍ତା ଅକାମି ଅନୁଭୂତି ଯାହାର ମୂଲ୍ୟ କେବେ କେହି ଦେଇ-ନାହିଁ, ସେ ବି ନମସ୍ୟ । ସେଦିନର ସୂର୍ଯ୍ୟ ଆଉ ଆସିବ ନାହିଁ ।

ମନ-ଗହ୍ବରର ଅବୁଝା କଥା । ତା'ର ପ୍ରକାଶ ମଧ୍ୟ ଅଜ୍ଞେୟ, ଅବ୍ୟକ୍ତ; କାରଣ ସେ ସରଳ, ଗଣ୍ଠି ନାହିଁ କି ଖିଅ ନାହିଁ ଧରିବାକୁ ମାପିବାକୁ ।

ଅଳସ ଦିନଗୁଡ଼ାକ ପାଣି ପରି ବୋହି ଯାଉଥାଏ । ସେଦିନ ରମେଶ ଘରକୁ ଯାଇଥିଲି । ଲୋକେ କହନ୍ତି ସେ ଭଲପାଏ । ତା'ର ଡାଇରିରେ ତାରିଖ ସମସ୍ତ ଦିଆହୋଇ ଅନ୍ତତଃ ଦୁଇ ଡଜନ କାହାଣୀ, ନାୟକ ସେ ନିଜେ ନିଜେ । ତା'ର ବୈଠକଖାନାରେ ଗଣି ଗଣି ସଜାଡ଼ିଛି ଛବି, କେତୋଟି ସିନେମା ନଟୀମାନଙ୍କର, କେତୋଟି ବା ତା'ର ବାନ୍ଧବୀମାନଙ୍କର । ରମେଶ ଭଲ ଫଟୋ ନିଏ । ତା'ର ଆଲ୍‌ବମ୍ ଅଛି । ସେ ଗର୍ବ କରେ କୌଣସି ସୁନ୍ଦରୀ ତାକୁ ଫାଙ୍କି ଦେଇ ପାରିନାହିଁ । ସବୁ ତା'ର କୋଥଳିରେ । ଏତେ ଦିନର ପରିଚୟ ସତ୍ତ୍ବେ କେବେହେଲେ ମୁଁ ତାକୁ ଚିନ୍ତିତ ଦେଖି ନାହିଁ, ଅନ୍ୟମନସ୍କ ଦେଖି ନାହିଁ ।

କିନ୍ତୁ ଗୋଟାଏ କଥା ଲକ୍ଷ୍ୟ କରୁଛି, ହସ ଛଳ ଛଳ ରମେଶ, ସୁଖୀ ରମେଶ, ସୌଖୀନ୍ ରମେଶ କେବେହେଲେ ତା'ର ଡାଇରିର

କୌଣସି କାହାଣୀକୁ ଆଜଯାଏ ପଢ଼ି ନାହିଁ, ତା'ର ଛବିକୁ ଏଲ୍‌ବମ୍‌ରୁ ଥରେ ଥରେ ନିରେଖି ଦେଖି ନାହିଁ, କେବେ ତା'ର ଆଖିରେ ମେଘ ଆସିନି ନାହିଁ, ସବୁଦିନେ ସୁଖୀ ଉଜ୍ଜ୍ୱଳ ରମେଶ ।

ରମେଶ ଗୌରବ ନିଏ କହୁ ତାକୁ ଫାଙ୍କି ଦେଇ ନାହିଁ, ହୁଏତ ସେ ଭାଗ୍ୟବାନ୍, ହୁଏତ ସେ ମିଛୁଆ; ନ ହେଲେ ସେ ମଣିଷ-ପଥର, ଯାହାର ଅନୁଭୂତି ଶରଦିନ ସୁଷୁପ୍ତ ।

ରମେଶ ସଙ୍ଗେ ଥରେ ଯାଇଥିଲି, କେତେ ଥର ଯାଇଛି, ଏଥରକର ବିଶିଷ୍ଟତା ଥିଲା । ଅନ୍ଧାର ରାତି, ଆକାଶରେ ମେଘ, ସହର ଆଲୁଅକୁ ନିଦ ଧରୁଥିଲା । ଏଇ ବେଳ, ଯେତେବେଳେ ମଣିଷର ଦେହର ଭୋକ ପ୍ରେତ ରୂପରେ ମନ-ଗମ୍ଭୀରରୁ ବାହାରେ ଛପି ଛପି କବାଟରେ ଖିଲ ମାରିଦିଏ । ଗଡ଼ କତେ ।

ବନାରସୀ ଖିଲ ଦୋକାନରୁ ପାନ ଖାଇଲୁ ସେ ଆଉ ମୁଁ । ଅନ୍ଧାରରେ ପିଠି ମାରି ମାରି ବେକରେ ଫୁଲମାଳ ପକାଇ କିଏ କେତେ ବୁଲୁଥାନ୍ତି । ସେ ବି ବେଳ !

ରମେଶ କହିଲା—

"ଆରେ ବୋକା ଗଧ, ଗୁଇ ପଛରେ ଧାଇଁ ଧାଇଁ ଭୋକରେ ଆପଣାର ଚର୍ବି ହଜମ କଲା ପରି ମଣିଷ ଖାଲି ନିଜକୁ ଖାଇ ଭସ୍ମ କରେ । ସରମା, ନିରୁପମା, ଆଶାଲତା, ଏମାନେ ଖାଲି ବାକ୍‌ମୟୀ, ଏମାନେ ଖାଲି ବେଦ୍ୟାତନା, ଖାଲି ଶୋଷ । ଶୋଷରେ ଘାରି ହୋଇ ଏମାନଙ୍କ ଗଳ୍ପ-ଭଉଁରୀରେ କେତେ ଯୁଗ ଲଟକଣ ଖାଇ ଖାଇ ଶେଷରେ ହାଉଁହାଉଁଆ ପାଟିକ ଖାଲି ଟୋପାଏ କାଦୁଅମିଶା ପାଣି । ଶେଷରେ ଦିନର ଆଲୁଅ ପଡ଼ିଲେ ପାଣି ଉଡ଼ିଯାଇ ଖାଲି କାଦୁଅ । ବୋକା ଗଧ, କହିଚା ଗୁଡ଼୍, ଏଇ ତ ବେଳ । ଆ ।"

ଜାଣେ ନା ରମେଶର ଯୁକ୍ତି ତା' ତୁଣ୍ଡରେ, ଅଥବା ମୋ' ମନରେ ।

ହଠାତ୍ ହୋସ୍ ହେଲା—ଅନ୍ଧାରୁଆ ଗଳି, ଗଳି ଭିତରେ ଗଳି, ଠିକ୍ ଜାଲ ପରି । ଏପାଖ ସେପାଖ ଠାଏ ଠାଏ ମିଞ୍ଜି ମିଞ୍ଜି ଆଲୁଅରେ ଜକ ଜକ ଧୋବ ଧୋବ ଶାଢ଼ୀ, ଅତର ବାସନା ।

ଆଉ ଦଶ ପାହୁଣ୍ଡ ଥିଲା, ରମେଶ କହିଲା—

"ବୋକା-ଗଧ ଠିଆହେଲୁ କ'ଣ ? ଆଃ ।"

ଦୁଆରମୁହଁରେ ଜଣେ ଧ୍ୟାନରେ ଠିଆ ହୋଇଥିଲା । କି ଧ୍ୟାନ ସେ !

ତା'ର ଗୁଣପାଖ ଅନ୍ଧାରଘେରା । ତା'ର ମୁହଁପାଖେ ଅଳ୍ପ ଅନ୍ଧାର ଆଲୁଅ । ତା'ଣ ଆଲୁଅ । ତା'ର ପୃଷ୍ଠପଟ ଅନ୍ଧାର-କାରାଗାର ।

ଅତି ପରିଚିତ ସମ୍ଭାଷଣ ଦେଇ ସେ ଦୁଇ ପାହୁଣ୍ଡ ଆଗେଇ ଆସିଲା, ରମେଶର ପଞ୍ଜାବୀ-ପକେଟ୍ ହଠାତ୍ ଝଣ ଝଣ ହେଲା । ଅତି ସହଜଭାବେ ରମେଶ ଆଗେଇଗଲା, କାନ୍ଧ ଉପରେ ଡାକଟାଏ ପୋଷାଡ଼ିଲା—

"ଗଧ !"

ମୁଁ ଅପେକ୍ଷା କଲି ନାହିଁ । ପ୍ରାଣପଣେ ଦଉଡ଼ିଲି, ଗୁଣପାଖର ଅନ୍ଧାର ମୋତେ ଗ୍ରାସ କରିବାକୁ ଗୁହେଁ, ଏହି କଥା ମୋ'ର ମନର କଥା । ଏଇଥିପାଇଁ କ'ଣ ମୋ'ର ମନ ଏତେଦିନ ପ୍ରସ୍ତୁତ ହେଉଥିଲା ?

ମୁଁ ଦୌଡ଼ିଲି, ଜୀବନରେ ଏପରି କେବେ ଦୌଡ଼ିବାକୁ ପଡ଼ିନାହିଁ । ପାଖରୁ ହସର ରୋଳ ଶୁଭୁଥାଏ । ହସନ୍ତୁ ସେମାନେ ମନଇଚ୍ଛା । ମୁଁ ପ୍ରାଣ ପାଇଛି । ବଡ଼ ରାସ୍ତାରେ ଉଜ୍ଜ୍ୱଳ ଆଲୁଅ ପାଖେ ହେଲାବେଳକୁ ମୋ'ର ଛାତି ଦୁଲୁକୁଥାଏ, ଝାଳ ଫାଟି ପଡ଼ୁଥାଏ । କାନେ କାନେ କି ଗରମ ! ମନ ଭିତରେ ଯେପରି କିଏ ଟାପରା କରୁଛି, "ତୋ'ର ବୟସ କେତେ, ତା'ର ଷୋହଳ, ତୁ ଶିକ୍ଷିତ, ସେ ଅଶିକ୍ଷିତ, ହାରିଲୁ ତୁ ?"

"ଛି ଛି ନା ମରଦ୍ !"

କିନ୍ତୁ ହେଉପଛେ ରମେଶ ଗୌରବଜେତା, ମୋ'ର କ୍ଷୋଭ ନାହିଁ; ସ୍ୱୀକାର କରୁଛି ଅନ୍ଧାର ଗଳି ସନ୍ଧିରେ ବୁଢ଼ିଆଣୀ ଜାଲରେ ଛଟପଟ ହେବାର କ୍ଷଣିକ ଆନନ୍ଦ, ସେ ବି ଏଇ ଜୀବନର ଖଣ୍ଡେ । ସେଇ ଗଳି ତା' ଉପରେ ବି ରାତିର ଜହ୍ନମା ଜଳେ, ଦିନର ଖରା ନିଆଁ ଜାଳେ । ସେଇ କଣୋଣା, ପକ୍ଷୀର କାକଳି ତା' କାନରେ ବି ବାଜେ । ବସନ୍ତର ଦମକା ପବନ ତା'ର ରୁନ୍ଧିଲା ମନର କବାଟରେ ଥିରି ଥିରି ହାତ ମାରି କହିଯାଏ ସେ ବି ମଣିଷ, ତା'ର ବି ସୁଖ ଦୁଃଖ ଅଛି । ରମେଶହେରିକାଙ୍କ ପରି ଲୋକଙ୍କୁ ଖୁସି କରିବା ଲାଗି ସେ ଖାଲି କଳ ନୁହେଁ, ତା'ର କ'ଣ

ଅଜ୍ଞାତ ନାହିଁ ? ଖୋଜିବା ହକେଇବାର ଏତେ ବଡ଼ ଦୁନିଆରେ ତା'ର କ'ଣ କିଛି ଘୁଞ୍ଚିବ ନାହିଁ, କେହି ନ ଥିଲାବେଳେ ଝରକାପାଖେ ଠିଆ-ହୋଇ ଫମ୍ପା ରାସ୍ତାକୁ ଅନାଇଁ ଦୀର୍ଘଶ୍ୱାସ ମାରିବାକୁ !

ଗୁଡ଼ । ଯେଉଁଠି ଖୋଲା କ୍ଷେତରେ ଆଳୁଅର କୁଆର ଛୁଟେ, ସେଠି ଅନ୍ଧାର ନର୍ଦ୍ଦମାରେ ଆଳୁଅର ଧାର ବିଶ୍ଳେଷି ଦେଖିବା ଆଦର୍ଶ ହୋଇପାରେ, କିନ୍ତୁ ତା'ର ପ୍ରୟୋଜନ ନାହିଁ ।

ସେ ମୋତେ ପରିଚିତ କରିଥିଲ, ଯାହାହେଉ ତା'ର ପରିଚୟ; କିନ୍ତୁ ପରିଭୁକ୍ତ କରିପାରି ନାହିଁ । ପରିଚୟର ଆଘାତରେ ମନ ସବଳ ହୋଇଥିଲ, ବୃତ୍ତିଆଡ଼ୁ କିଏ ଯେପରି ଆଳୁଅର ସୂଅରେ ଆଗକୁ ଆଡୁର ପେଲିଏ ମାରିଥିଲେ । ସହରର ଆଳୁଅ ଡୁବେଇଥିଲ ସତ, ୮୮ ନଶାର ଘୋର ମୋ'ର କଟିଯାଇଥିଲ ।

ରମେଶ ଉପରେ ମୁଁ ରାଗିଥିଲି ଟିକିଏ, କିନ୍ତୁ ବିଗୁଣା, ତା'ର ଦୃଷ୍ଟି କ'ଣ ? ଆଜ ସିଏ—ଯେ ହେଉ ସେ; ଭଗବାନ୍ ତା'ର ମଙ୍ଗଳ କରନ୍ତୁ, ମୋ'ର ଅବଶୋଷ ନାହିଁ ।

ଏଇ ମଣିଷ—ତା'ର ଭିତରଟା ଖାଲି ମାଟି । କେଉଁ ଅଜଣା ସ୍ରଷ୍ଟା—ବାହାରର ବିରାଟ ପ୍ରକୃତିର ଯୋଗ-ଯୋଗ ଦେଖି ସେହି ମାଟିର କ୍ଷେତରେ ମଞ୍ଜି ବୁଣିଦିଏ, ଜାତିଜାତିକା ଫୁଲ ଫଳର ମଞ୍ଜି, ବାହାରର ଆକାଶରେ ଖରା ଲହଡ଼ି ଭାଙ୍ଗେ, ମେଘର କୁଆର ଛୁଟେ, କେତେବେଳେ ଖାଲି ଭାବନାହୀନ ନିରନ୍ଧ୍ର ଜଡ଼ତା । ସେହି ଯୋଗ-ଯୋଗରେ ମଣିଷର ଭିତରର ମାଟି ଫାଟେ, ମଞ୍ଜି ଗଜା ହୁଏ, ଭିନ୍ନ ଯୋଗର ଭିନ୍ନ ଗଛ ।

ରମେଶର କଥା ଗଲ । ଯେତେବେଳେ ମୁଁ ବସିଛି ଆକାଶର ହାଲୁକା ବିଷାଦ ତଳେ ଅବସାଦ ଆଜି ଶାନ୍ତ । ଭାବୁଥିଲି ।

ବହୁତ ଦିନ ପରେ କାଲି ଭାଉଜଙ୍କଠାରୁ ଖଣ୍ଡେ ଚିଠି ଆସିଥିଲ, କେତେ ଦିନ ହେଲା ମୁଁ ଯାଇ ନାହିଁ ସତ, ତେଣେ ସେମାନେ କୁଆଡ଼େ ରେଣୁକାର ବାହାଘର ପାଇଁ ସମ୍ବନ୍ଧ ପଠାଉଛନ୍ତି !

ପଦ୍ମରଦିନ ଗାଁରୁ ପରିଆ ଭଣ୍ଡାରୀ ଆସିଥିଲ । କହୁଥିଲ, ବାପା ବୋଉ ମୋ ବାହାଘର ପାଇଁ ବଡ଼ ଉଦ୍‌ବିଗ୍ନ, ଏଣେ ଦୁଇଜଣ ପାଇଁ ଅପେକ୍ଷା

କରୁଁ କରୁଁ ଟିଭସନ୍ କର ମୋ'ର ସମସ୍ତ କଟୁଛି, ସନ୍ଧାନ ମିଳୁଛି ଗଦେଇ ପଧାନ ଦୋକାନ ପାଖେ, ନାଁ-ଡାକ୍ ଯେଉଁ ହରିବାବୁଙ୍କ ଘର—ସେଠି ଗୋଟିଏ ଟିଭସନ ଖାଲି ଅଛି । ବଡ଼ି ଝିଅ ।

ନୂଆ ବାଇସ୍କୋପ ଆସିଛି, ବନ୍ଧୁମାନେ କହୁଥିଲେ ଭଲ ଆମେରିକାନ୍ ଛବି, ଅନେକ ଲଙ୍ଗଳା ଦେହ ।

ପ୍ରସ୍ତାବ ହେଉଛି ଅଚିରାତ୍ ମ୍ୟୁନିସିପାଲିଟିରେ ଗୋଟିଏ ବଡ଼ ମେଳା ହେବ, ବମ୍ବେଠୁଆଉ୍ ବିବିଧ ରଙ୍ଗର ଜନ୍ତୁ ଆସିବେ ନିଶ୍ଚୟ ।

ଏହିପରି ବହୁତ ଭାବନା, ମୁଣ୍ଡରେ ଧଉଡ଼ାଉଡ଼ା ଖେଳ ।

ପୋଖରୀଆଡ଼କୁ ହଠାତ୍ ନଜର ଗଲା, ଦେଖିଲି ଦୂରରୁ ଶହ୍ଵା ବହୁତ ସ୍ତ୍ରୀଲୋକ ଗାଧୋଉଛନ୍ତି । ବଡ଼ ପୋଖରୀକୂଳରେ ମୋ'ର ସ୍ଲେଟ ବସାଟି, ପ୍ରତିଦିନ ଏହି ଚଳଚ୍ଚିତ୍ର ଦେଖିବାର ଅଭ୍ୟାସ ହେଲାଣି ।

ଦୂରରୁ ସୁନ୍ଦର ଦିଶେ, ନିଶା ବଢ଼େ, ଅଳ୍ପ କେତେଦିନ ତଳର ରମେଶ ସାଙ୍ଗର ସେହି ଅନୁଭୂତି ମନେପଡ଼ିବାରୁ ସଙ୍କୁଚିତ ଲାଗିଲା । ଝରକାଆଡ଼ୁ ମୁହଁ ଫେରାଇ ଆଣିଲି, ଲାଗିଲା ଯେପରି କେତେ ଆଖି ଦୂରରୁ ସୂକ୍ଷ୍ମ ମୋ'ର ଅସ୍ତିତ୍ୱଟାକୁ ଧରାପକାଇ ଦେବାକୁ ଚାହୁଁଛି । ମନ ସହଜରେ ଭାବିପାରିଲା, "କିନ୍ତୁ ସେଥିରେ କଅଣ ଅଛି ? ଅନେଇବା ଅଧିକାର ସମସ୍ତଙ୍କର ଅଛି ।"

କିଛି ସମୟ ପରେ ବାରିପଟକୁ ଗଲି । ବାରିପଟ କାନ୍ଥରେ ଗୋଟିଏ ସ୍ଲେଟ କଣା ଅଛି । ଠିକ୍ ଏତିକିବେଳେ ସେପାଖେ ଝିଅଟିଏ ଆସି ବୁଲାଚଲା କରେ । ସାମାନ୍ୟ ଟିକିଏ ଉଙ୍କିମାରିବ । ସେ ଵ ଦଶ ପନ୍ଦର ମିନିଟ୍, ଅଭ୍ୟାସ । କାମ କରୁ କରୁ ଅନେକ ସମୟରେ ସେପାଖ ଘରୁ ସେ ଝିଅର ପାଟି ଶୁଭେ । ବେଳେ ବେଳେ ମୁଁ କାନାଏଁ । ଶୁଭୁଥାଉଛି—"ମା ବଟିଆ ହଜିଛି, ଛଡ଼େଇ ହେଉ ନାହିଁ······ଜଭ ଚ୍ଛେଲିବ, ଦାଆକାଠି ଦେ······ହାଣ୍ଡିରେ ବହୁତ କଳା······ଏ ମାଛବାଲା ଏଗୁଡ଼ାକ ସଢ଼ା ମାଛ, କିଏ କିଣିବ"—ମୋ'ର ମନର ମାଟିର ରଙ୍ଗରଙ୍ଗର ଗଢା ପାଇଁ ଏ ସ୍ୱରସଙ୍ଗୀତ ବି ସାମଗ୍ରୀ—

ମନର ପ୍ରେତ ମନ ଭିତରେ ବୁଦାଜଙ୍ଗଲରେ ଲୁଚିଯାଏ, ସେ ଭଦ୍ରମର୍ଯ୍ୟାଦାସମ୍ପନ୍ନ, ତାକୁ ଧରିବ କିଏ ?

ଭଦ୍ର ସମସ୍ତେ, ଅଭଦ୍ର ସମସ୍ତେ, କିଏ ବା ନିଜର କର୍ମ-ବିପାକରେ ଧରାପଡ଼ି ଅଭଦ୍ର ହୁଏ, ଆଉ କିଏ ସେ ଭାଗ୍ୟବାନ୍ ଧରା ପଡ଼େ ନାହିଁ ।

ନିତିଦିନର ନିର୍ଘଣ୍ଟ, କାମ ଭିତରେ କେଉଁଠି ମରମ ଅନୁଭୂତି କେତେ ପ୍ରକାରେ କେଉଁଠି ଲୁଚିରହେ ସେ ତା'ର ପତ୍ତା ମିଳେ ନାହିଁ । ଧରାଯାଉ ସେ ଶୋଇଛି, କିନ୍ତୁ ସଚେତ ଅଛି । ହଠାତ୍ ସହିସୁ କେଉଁ ଉଚ୍ଛ୍ୱାସ ଅଜାଣତରେ ମନ ଭିତରେ ଉଠିଲା, ମନ ହେଲା ଖୁବ ଚଞ୍ଚଳ । ପ୍ରଫେସର କ୍ଲାସରେ ପାଠ ପଢ଼ାଉ ପଢ଼ାଉ ଅବ୍ୟାଜରେ ବ୍ରାଉନିଂଙ୍କର କେଉଁ କବିତା ଉପରେ ଅଧିକ ଚର୍ଚ୍ଚା କରିବାକୁ ତାହାର ମନ ହେଲା । କେତେବେଳେ ମନ ହେଲା ଇଂରେଜ କବି ମିଲ୍‌ଟନଙ୍କର ସଇତାନର ପକ୍ଷ ନେଇ ଭଗବାନଙ୍କ ଉପରେ ଦୁଇକଥା ଝାଡ଼ି ଦେବାକୁ । ଏସବୁ ପ୍ରକାର ପ୍ରବୃତ୍ତିର ମୂଳରେ ମଧ୍ୟ ସୁପ୍ତ କ୍ରିୟାଶୀଳ ମରମ ଅନୁଭୂତି ।

କାମ ଶେଷ, ସଞ୍ଜ, ନଈକୂଳର ବିଶିଷ୍ଟ ବେଳା, ନିତିଦିନର ଦେଖା—ଶୁଣା ବନ୍ଧୁ ବାନ୍ଧବ । ନଈବାଲି ଉପରେ ନଈବନ୍ଧ ଉପରେ ଏଇ ବେଳର ସେଇ ପୁରୁଣା ଛବି, ସ୍ତ୍ରୀ ଆଉ ପୁରୁଷ, ସେଇ ପାଉଡରମଖା ମୁହଁ, ସେଇ ରଙ୍ଗିନ୍ ବ୍ଲାଉଜ୍, ଶାଢ଼ୀର ସେ ବିଶେଷ ଧଡ଼ି, ସେଇ ଭଙ୍ଗୀ, ହାତହଲା, ରୁମାଲହଲା, କାନର 'କାନ-ପାଶା', ହାତର 'କଙ୍କନ୍', କପାଳର 'ସିନ୍ଦୁର-ଟିପା' । ପବନରେ ଉଡ଼ନ୍ତା ହସ, କିଛିଟିଆ ପିଠି ମାରି ମାରିବା ସାଧନ, ଦେଖଣାହାରି, ମଶାଣିକା, ଆଉ ଫଗୁ ଖେଳ ।

ଏ ବି ନିତିଦିନର, କିନ୍ତୁ ଏଇ ସ୍ମୃତି, ପ୍ୟାର ବି ମୁହୂର୍ତ୍ତ ଅଛି, ଯେତେବେଳେ ସବୁ ଚାପେଇ ଦେଇ ରେଣୁକା, କନକଲତା ଆଉ ମଞ୍ଜୁଳିକା ସମସ୍ତଙ୍କ ଉପରେ ଏ ରାଜତ୍ୱ କରେ ।

ମଣିଷର ମନ—ବିଚିତ୍ର ।

ବଡ଼ ସହର—ଏଠି ଧୂଳିମଳି, କାଦୁଅ ଅଳିଆ, ଗଳିଏ ଗଳିଏ । ଏଠି ଘରସବୁ ଗେଞ୍ଜାଗେଞ୍ଜି, ମେଞ୍ଚାମାଞ୍ଚି, ଏଠି ରାସ୍ତାରେ ଠେଲାଠେଲି

ଲୋକ, ବେଦରଙ୍ଗ ବେପାଗ ମନ ତାଙ୍କର, କାହାର କାହାରକୁ ଲୋଡ଼ା ନାହିଁ, ନିଜେ ନିଜ ଧନ୍ଦାରେ ସମସ୍ତେ ବ୍ୟସ୍ତ । ଏଠି ଗାଁର ଶିଷ୍ଟ ନାହିଁ, ଗୋଷ୍ଠୀର ସ୍ନେହ ନାହିଁ, ଖାଲି ଗୋଟାଏ କାରଖାନା, ଯେଉଁଠି ଗୋଟାଏ ବଡ଼ କଳ ଭିତରେ ଆଜ ସମସ୍ତେ ଖାଲି ମାନ ସାନ କଳ ।

ଏଇ ବଡ ସହରରେ ଆମର ମନ୍ୟୁ କାନ୍ଦେ, ଦୁଃଖରେ ପୋଡ଼ି ହୋଇ, ଅଭିମାନରେ ଫୁଲିକି ହୋଇ, କିନ୍ତୁ ଯୁଗ ଭିତରେ ଆମେ ଆମର ଘରକରଣା ତିଆରି କରିନେଉଁ, ଆଶ୍ରମର ଶାନ୍ତି ଚାହିଁ, ମନକୁ ଭୁଲେଇ ରଖି ପାରୁଁ । ଯୁଗ ଭିତରେ ଆମର ଭଲ ପାଇବାର ଜୁଆର ବେଶ୍ ସୁନ୍ଦର ଭାବେ, ମଣିଷପଣିଆର ସବୁ ପ୍ରବୃତ୍ତି ଅଭିଳାଷ ଆମେ ସାର୍ଥକ କରୁଁ, କିଛି ଅଟକ ରହେ ନାହିଁ ।

ଆମର ଦରକାର ସ୍ୱପ୍ନ ଏ ନାହିଁ ସମୁଦ୍ରକୂଳର ବାଲିଚର, ନଈଗଛିଆ ତାଳବଣଳା ବା ଆମ୍ବତୋଟା । ଏଠି ନୋଇଲି ନାହିଁ, ତାହୁକ ନାହିଁ, ସୌଖୀନ୍ ପୂର୍ଯ୍ୟାସ୍ତ ନାହିଁ । ସବୁ ଧୂଆଁ ଆଉ ଧନ୍ଦା ଆଉ ଧୂଳ । ତଥାପି ବେଶ୍ ଚଳେ ।

ନାମ, ମାଜପୀ, ଭଉଜ, ମାଇଁ, ଅପା— ଏମାନେ ଯେ ଖାଲି ଗାଁରେ ଥାଆନ୍ତି, ଭାବିବା ଭୁଲ୍ । ସବୁଠି ଥାଆନ୍ତି, ସହରରେ ବହୁତ । ସେମାନଙ୍କର ତାଲିକା ଦେବ ନାହିଁ, ଆପଣୁ ଯେ ଯେତେବେଳେ ଖୁସି, କିନ୍ତୁ ତାଙ୍କର ସ୍ନେହ ଆଦର ଅସ୍ୱୀକାର କଲେ ଜୀବନଗୋଟାକୁ ନାସ୍ତି କରିଦେବାକୁ ପଡ଼ିବ । ଆଜ ଏ ବୃଦ୍ଧ ବୟସରେ ତାଙ୍କୁ ବ ରାଧେଶ୍ୟାମ ସ୍ମରଣ କରୁଛି, ସେ ଅକୃତଜ୍ଞ ନୁହେଁ । ସେମ୍ନପର ସହରର ଭାଇ ପୁଞ୍ଜା ପୁଞ୍ଜା ଏବଂ ଅନରେର ଶଳାମାନେ ଏବଂ ଭଣେଇମାନେ । ପ୍ରତ୍ୟେକ ସମୟରେ ପ୍ରତ୍ୟେକ ବସ୍ତୁର ଉପାଦେୟତା ଅଛି, ଆବଶ୍ୟକତା ଅଛି, ସେମାନେ ବ ସ୍ମରଣୀୟ ।

ବନ୍ଧୁ ରାଘବ ଆସେ, କହେ, ରାଧେଶ୍ୟାମ, ଆସିଲୁ ନାହିଁ ଆମ ଘରକୁ ? ସେ ଖୁମ୍‌ସିଜାଳୀ ଲୋକ । ଘରେ ବୋଉ ଆଉ ଭଉଣୀ ମାଧବୀ । ସେ ମୋ'ର ଜାତି ନୁହେଁ, ତା' ସହିତ ମୋ'ର ବନ୍ଧୁବାନ୍ଧବ ସମ୍ପର୍କ ଗଢ଼ିବା ଅସମ୍ଭବ; କିନ୍ତୁ ସେ ମୋ'ର ଗୋଟିଏ ଭାଇ ପରି—ସେତେବେଳେ ହୋଇଥିଲା ।

ଗଉଡବୋଉ କେଡ଼େ ସ୍ନେହରେ ବସେଇ କଥାଭାଷା କରନ୍ତି । ତାଙ୍କୁ ବାତଜର ହୁଏ, ମୁଁ ନାନାପ୍ରକାର ପ୍ରବୋଧ ଦେଇ ଔଷଧ ବତାଏଁ । ଗୋଟିଏ ପାଖେ ମାଧବୀ ବସି ତା'ର ପଢ଼ାବହିରେ ମନ ଦେବାକୁ ଚେଷ୍ଟା କରୁଥାଏ । କେତେଥର ମୁଁ କବାଟରେ ବାଡ଼େଇଲେ ମାଧବୀ ଉଦରଟିଏ ନେଇ ଆସି ହସି ହସି କବାଟ ଫିଟେଇ ଦେଇଛି । ସବୁଦିନେ ତା'ର ସେଇ କଥା, "ସାଧୁଭାଇ, ତୁମ କବାଟ ବାଡ଼ିଆରୁ ମୁଁ ଜାଣି ନେଇଛି କିଏ ତୁମେ ।" ଗଉଡ ନ ଥିବ, ମାହାନରେ କଟିକଟିଆ ଅନ୍ଧାର ଘର, ଭିତରେ ନଡ଼ାଛଟିଆ, ବଖରାଏ ଖାଲି ଘର ଆଉ ଗୋଟାଏ ଖାଲି ଦୁଆର ଟପିଲେ ଯାଇ ରନ୍ଧାବାଢ଼ର, ମୁଁ ଆଉ ମାଧବୀ ହଟଗୋଳରେ କଥାଭାଷା ହୋଇ ହୋଇ ଭିତରକୁ ଯାଉଁ । ଗଉଡବୋଉ ସବୁଦିନେ ମୋ'ର ବୋଉ ପରି, ଆଉ ମାଧବୀ ମୋ'ର ସାନ ଭଉଣୀ ପରି ।

କେବେ ହଠାତ୍ ସୁଦ୍ଧା ଛନ ଛନ ଲାଗିନାହିଁ, ଲାଗୁଥାଏ କି ପରିବାର ସେ । ଲାଗୁଥାଏ ସହାନୁଭୂତିମିଶା ସ୍ନେହ !

ସେମାନେ ଗରିବ, କେତେ ବର୍ଷ ଇସ୍କୁଲରେ ପଢ଼ିଲା ପରେ ଦରମା ଦେଇ ନ ପାରି ମାଧବୀର ନାଁ କଟିଯାଇଥିଲା । ପଢ଼ିବାକୁ ତା'ର ଭାରି ମନ, ବାପନ ମାଜ ଶେଷରେ କରି ଘର ସମ୍ଭାଳି ଯେତେବେଳେ ସେ ଟିକିଏ ସମୟ ପାଏ, ତା'ର ପୁରୁଣା ବହିଗୁଡ଼ାକ ଆଗରେ ବସେ, ଆଉ ପୁଣି ପୁଣି ସେଇଆକୁ ପଢ଼େ । ଯେତେବେଳେ ସମୟ ପାଇଲେ ମୁଁ ଯାଇ ତାକୁ ଏଣୁତେଣୁ ପଢ଼େଇ ଦେଇ ଆସେ । ତା'ର ବୋଉ କହନ୍ତି, "ପ୍ରାଇଭେଟ୍‌ରେ ପରୀକ୍ଷା ଦେବ ବୋଲି କହୁଚି ଯେ କିଏ ପଢ଼େଇଦେବ କହ, ଗଉଡଟା ତ ଯୋଉ ଚଗଲା ତୁମେ ଜାଣିଛ !"

ଗଉଡ ବି ଅଧାପାଠୁଆ, ବଡ଼ଗରିବ, ଗୋଟିଏ ଓକିଲ ପାଖେ ଗ୍ଲେଟିଆ ସିରସ୍ତା-କରାନ, ସେଇଥିରୁ ଯାହା ଦି' ପଇସା ପାଏ, ଠିକ୍‌ରେ ଦେଖା ପଡ଼ିଗଲେ ବନ୍ଧୁମାନଙ୍କୁ ଖିରମୋହନ୍ ଖୋଇ ସରବତ୍ ଖୋଇ ଖାଲି ପକେଟ୍‌ରେ କେବେ କେବେ ଘରକୁ ଫେରେ ।

ଏ ଘରେ ମତେ ଆପଣାର ଲାଗେ । ସୁଲିଆଲୁ ଠେଲି ଖାଇ ଧାଉଁଲ ହୋଇ ଏଠିକି ମୁଁ ଯେତେବେଳେ ଆସେ, ମାଧବୀକୁ ଜବରଦସ୍ତି ପାଠ ପଢ଼ାଏ, ଆଉ ଗପ କରେ, ଗଉଡ ଥିଲେ ଭଲ, ନଇଲେ ନାହିଁ ।

ଧୀରେ ଧୀରେ ମୋ'ର ଆଖି ଆଗରେ ମାଧବୀ ବଢ଼ିଯାଉଛି, ଧୀରେ ଧୀରେ ମୁହଁ ବେଶି ଗମ୍ଭୀର ହୋଇଯାଉଛି, କିନ୍ତୁ ସ୍ୱାସ୍ଥ୍ୟ ନାହିଁ । ଗାଲ ପଶିଯାଉଛି, ଆଖି ତଳେ କାଳିଆ ଗାର । ତାକୁ ଦେଖିଲେ ଦୁଃଖ ଲାଗେ । ତା'ର ସ୍ୱାସ୍ଥ୍ୟ ଉନ୍ନତି କରିବାକୁ ଉପଦେଶ ମୁଁ କମ୍ ଦିଏ ନାହିଁ ।

ବଳେ ବଳେ ଯାଚି ଯାଚି ମୋ'ର ଉପଦେଶଗୁଡ଼ାକ ତା' ଉପରେ ଅଜାଡ଼ ଦେଲାବେଳେ, ଚଉଡ଼ାଶୁଣା ବର୍ଷପୂର୍ବରେ, ଭବିଷ୍ୟତର ସାତପାଞ୍ଚ ବର୍ଷପୂର୍ବରେ ଦୀର୍ଘ ବକ୍ତୃତା ଦେଲାବେଳେ, ସମସ୍ତ ସମୟରେ ମାଧବୀ ଅମାନିଆଁ ହୁଏ, ପାଖରେ ବସି ରହିବାକୁ ଚାହେଁ ନାହିଁ । ମଝିରେ ମଝିରେ ଚାହିଁକରି ସେ ଅନେଇଁ ଦିଏ, ସେ ଦୃଷ୍ଟିର ଅର୍ଥ କ'ଣ ଠିକ୍ ଜଣା ପଡ଼େ ନାହିଁ ।

ଏହାପରେ ଦିନେ ଦିନେ ତା' କଥା ମୁଁ ବେଶି ଭାବେଁ । ଇଚ୍ଛା ହୁଏ ତା'ର ଭଲ କରନ୍ତି– କେମିତି କେମିତି ହେଲେ ପ୍ରକୃତରେ ତା'ର କାମରେ ଆସନ୍ତି । ସବୁ ଇଚ୍ଛା ହୁଏ, କିନ୍ତୁ କରିପାରେ ନାହିଁ ।

ଏହାପରେ ମାଝେ ମାଝେ ଗଡ଼ଦ ଘର ଆଡ଼କୁ ମୁଁ ଆଦୌ ଯାଏ ନାହିଁ । ବାର ଧନ୍ଦା ଭିତରେ ତାଙ୍କ କଥା ମୁଁ ପ୍ରାୟ ପାସୋରି ପକେଇ ଥାଏଁ । ଯେତେବେଳେ ଥରେ ଯାଏଁ, ଯାଏ ଏକାଠି ଲାଗେ ଲାଗେ ସାତ ଦିନ ଆଠ ଦିନ । ପହିଲି କେଇଦିନ ହସ ଖୁସି, ପଛକୁ ପଛକୁ ତାଙ୍କର ପ୍ରଶ୍ନ ସବୁ ମୁଁ ମନ ଭିତରେ ବୋଝେଇ କରେଁ, ଶେଷ ଆଡ଼କୁ— ମୋ'ର ସ୍ନେହର ଭଉଣୀଟି ମାଧବୀ, କେମିତି ନରମ ହୋଇ ଆସେ, ମୁଁ ବି ଖରା ଆଡ଼କୁ ଅନେଇଁ ଥାଏଁ, କେମିତି ଗୁଇ ନେଉଥିଲେ ମୁଁ ତାଙ୍କ ଘରକୁ ଯିବି । ପୁଣି ଦି'ଦିନ ତିନି ଦିନ ମୋର ବକ୍ତୃତା, ମାଧବୀର ଅସ୍ୱସ୍ତି ଆଉ ତା'ର ସେ ବଚନ ଗୁହାଁରୀ, ଯାହାର ଦୃଷ୍ଟିରେ ମୁଁ ଆପଣାକୁ କଳି ଦେଖେଁ ଯେ ମୋ'ର ସବୁ ଖାଲି ବାଜେ କଥା, ମୁଁ ମୂର୍ଖ, ମୁଁ ଅପାରଗ । ମନ ଭିତରେ ଛିଣ୍ଡିଲା ଛିଣ୍ଡିଲା ପରି ଲାଗେ, ମୁଁ ପଳେଇ ଆସେଁ ।

ଦିନାକେତେ ହେଲା ମୋ'ର ଝୁଙ୍କ ଲାଗିଛି, ମାଧବୀ ପାଇଁ ବରପାତ୍ର ଖୋଜିବା । ସହରର ଅନେକ ଅଭ୍ରଟାଙ୍କୁ ମୁଁ ଚିହ୍ନେ, ସେହିମାନେ, ମୋ'ର ପର । କଥା ପ୍ରସଙ୍ଗରେ ସେମାନଙ୍କ ବାହାଘର କଥା ଉଠାଏ । କାହାଠୁଁ କେବଳ ଟିକିଏ ଭରସା କଥା ଶୁଣିଲେ ଗଡ଼ଦ ଘରକୁ ଯାଏ,

ଅନେକ ସମସ୍ତ ଗୃହବ-ବୋଝ ଆଜ ମୋ'ର ଏକାଠି କଟେ, ଖାଲି ତର୍କ ଆଜ ଆଲୋଚନା । ବାରମ୍ବାର ତାଙ୍କ ମୁହଁରୁ ମାଧବୀର ଗୁଣକୀର୍ତ୍ତନ ମୁଁ ଶୁଣେ, ମତେ ଖୁସି ଲାଗେ । ଏହିପରି ଘଣ୍ଟାଏ ଦୁ' ଘଣ୍ଟା ମାଧବୀ ବିଷୟରେ ଚର୍ଚ୍ଚା । ଆଜ ଧ୍ୟାନରେ କଟେ, ମତେ ଭଲ ଲାଗେ ଏହିପରି ଭାବ, ଯେ ସେ ଘରେ ମୁଁ ମାଧବୀର ଭବିଷ୍ୟତ ଗଢ଼ିବାରେ ସାହାଯ୍ୟ କରୁଛି, ମୋ'ର ଶ୍ରମ ନିତାନ୍ତ ନିଷ୍କାମ, ମୁଁ ପରର ଉପକାର କରୁଛି ।

ମୁଁ ତା'ର ବାହାଘର ଠିକଣା କରିଦେଇ ପାରିବି, ପ୍ରକୃତରେ କେବେ ମୋ'ର ନିଜର ବିଶ୍ୱାସ ହୋଇନାହିଁ ।

କାହିଁକି ତେବେ ମୁଁ ସେ ବିଷୟରେ ଏତେ ଆନ୍ଦୋଳନ କରେ ?

ମୁଁ ଜାଣେ ନାହିଁ ।

କିନ୍ତୁ ନିଘେଳାରେ ବସି ସ୍ୱପ୍ନ ଦେଖିବାକୁ ମୋତେ ଭଲ ଲାଗେ । ଭାବ ଭାବ ସଜେଇ ହେବାକୁ ମତେ ଭଲ ଲାଗେ ଯେ, "ଆହା ମାଧବୀ ! ଗରିବ ମାଧବୀ—ମୋ'ର ସାନ ଭଉଣୀ ପରି ମାଧବୀ ! ମାଧବୀ ରଙ୍ଗଲୁଗା ପିନ୍ଧିଛି, ମୁଣ୍ଡରେ ସିନ୍ଦୁର, ହାତରେ ଶଙ୍ଖା, ମାଧବୀ ବାହାହୋଇ ଯାଉଛି ଘର-ସଂସାର କରିବାକୁ । ଶକୁନ୍ତଳାଙ୍କ ବିଦାବନ୍ଦବେଳେ କଣ୍ୱ ଋଷିଙ୍କ ପରି ମନର ପ୍ରବୃତ୍ତି କରି ନେଢ଼ୁଆ ଆଖିରେ ଶୂନ୍ୟକୁ ଚାହିଁ ମୁଁ ସଜେଇ ହୁଏ— ମାଧବୀ କାନ୍ଦି କାନ୍ଦି ଯାଉଛି; ମୋ ଦେହରେ ଆଉଜି ପଡ଼ି କାନ୍ଦି କାନ୍ଦି ହୋଇ କାନ୍ଦୁଛି, ଚାଲିବେଳେ ହାତ ମୁଠାରେ ନାକ ପୋଛି ମୋ'ର ପାଦୁଲିକୁ ମୁଠେଇ ଧରିଛି, ତା'ର ବଡ଼ ବଡ଼ ଆଖିରୁ ଲୁହ ଜେଗ ଜେଗ ଗଡ଼ିପଡ଼ୁଛି, ମୁଁ ବି କାନ୍ଦୁଛି ।"

ଏହିପରି ଭାବିବାକୁ ଭଲ ଲାଗେ, ସହରର ଧୂଳିଧୂଆଁର ଅନିଶ୍ଚିତ ଆବରଣ କୁଆଡ଼େ ଉଡ଼ି ଚାଲିଯାଏ, ମୋ'ର ନିଃସ୍ୱାର୍ଥ ମନ ପୂଜା ଖୋଜେ, ପୂଜା ପାଏ, ସମସ୍ତ କହିଯାଏ ।

ମାଧବୀ—ଆଜି ସେ କେଉଁଠି ଅଛି ଖବର ମୁଁ ରଖି ନାହିଁ, କେହି ରଖନ୍ତି ନାହିଁ । ସେତେବେଳେ ଯେ ବଡ଼ ଦିଶୁଥିଲି କେଉଁଠି । ଜନର ହେଉ କି କେଉଁଠି ମୂର୍ତ୍ତି ହେଉ, ଆଜି ସେ ନାହିଁ । ଯେତେବେଳେ ସେ ହବୁ ହୋଇଥିଲି, ଆଜି ସେ ମୋ'ର କେହି ନୁହେଁ । ମୁଁ ତାର ଭାଇ ନୁହେଁ, ସେ ମୋ'ର ଭଉଣୀ ନୁହେଁ । କେହି କାହାର କିଛି ନୋହୁଁ ।

ମୁଁ ତା'ର ବାହାଘର ଠିକ୍ କରିବା ପାଇଁ ଏତେ ଯେ ଧାଁଧପଡ଼ ଲଗେଇ ଦେଉଥିଲି ସେ ଖାଲି ମୋ'ର ମନର ଅରମାଣ ମେଣ୍ଟେଇବା ପାଇଁ। ସେଇଥିପାଇଁ ପରା, ମୋ'ର ଏତେ ସମସ୍ତ ଏତେ ବଳ ମୁଁ ଖର୍ଚ୍ଚ କରିଥିଲି, ସେ ଖୁସି ହେଉଥିଲା, ମୁଁ ଖୁସି ହେଉଥିଲି। ସେ ବେଳ ଗଡ଼ିଯାଇଛି। ଏତେ ସକ ଏତେ ସ୍ୱପନ ସବୁ ବାମ୍ପ ହୋଇ ଉଡ଼ିଯାଉଛି କୁଆଡ଼େ ଆଉ କେଉଁଠି ଖୋଜିଲେ ଆଦର ହେବ ନାହିଁ, ବୁଢ଼ା ଦେହରେ ଟୋକା ଅଭିନୟ କଲାପରି ଲାଗିବ। ଯାହା ଯାଇଛି ଯାଉ।

ଏକା ଏଇ ମାଧବୀ ନୁହେଁ, କିଏ କେତେ ଥିଲେ, ଭାବି ବସିଲେ ଗୋଟାଏ ଚଳଚିତ୍ର।

ମାଧବୀର ଅନେକ ବହିରେ ମୋ'ର ହାତଲେଖାରେ ତା'ର ନାଁ ଆଜି କ୍ଲାସ୍ ଲେଖା ହେଇଥିଲା। ସେତେବେଳେ ଉଚ୍ଛଳ ଜ୍ଞାନ ମୋ'ର ତା' ପ୍ରତି ଥିଲା, ମୋ ମନର ସବୁ ସ୍ନେହ ଝାଡ଼ିଝୁଡ଼ି କରି ମୁଁ ଅତି ଶରଧାରେ ତା'ର ନାଁ ଲେଖି ଦଉଥିଲି, ବଡ଼ ଆହ୍ଲାଦରେ ତା'ର ନୂଆ କିଣା ବହି-ଗୁଡ଼ିକ ସେ ମୋ ଆଡ଼କୁ ମେଲ୍ହି ଧରୁଥିଲା, ମୁଁ ନାଁ ଲେଖି ନ ଦେଲେ ବହି ପଢ଼ିବାକୁ ତା'ର ମନ ଯିବ ନାହିଁ ପରେ କି!

ଆଜି ମାଧବୀ ହଜିଛି, ତା'ର ବହି ହଜିଛି, କେତେ ଅଜଣା ନାଁ ଅଜଣା ହାତ ଅକ୍ଷର ତଳେ ମୋ'ର କରଣୀର ସବୁ ଚିହ୍ନ ସେଠି ଛପି ଯାଇଥିବ, ନିଜେ ମୁଁ ବି ନିଜକୁ ସେଠି ଦେଖି ଚିହ୍ନିପାରେ ନାହିଁ।

ଉଡ଼ନ୍ତା ଖଇ !

ଆଜି କହୁଚି ଗୋବିନ୍ଦେ ସ୍ୱାହା—ସେତେବେଳେ ତ କହିବାକୁ ସତ ବକ୍ତୁ ନ ଥିଲା।

ଟାଆଁସିଆ ଖରାବେଳେ ମନ ଭିତରେ ଜଳିପୋଡ଼ି ଯାଏ। ହସ ସେତିକିବେଳେ। କଳ ପରି କାମ କରିହୁଏ। ଖରା ଶେଷରେ ବେଳ ବୁଡ଼େ, ଆସେ ଫମ୍ପା ମନର ଗହ୍ବର ଭଲିବାକୁ ପ୍ରବୃତ୍ତି, ତା'ପରେ ଉଦାସ ସଞ୍ଜ। ବରଷାରେ ଭାବ ଉପୁଜେ। ଫମ୍ପା ଭିତରେ କଢ଼ି ଫୁଟେ,

ଅଭାବ ହୁଏ ଭାବନାର ସୂଅ । କେବଳ ବାର ମାସର ତେର ଯାତ୍ରା ନୁହେଁ, ସେ ତ ଅତି ସ୍ୱାଭାବିକ, ଭାବ ବସିଲେ ବୃଷ୍ଟି ହୁଏ ଭଞ୍ଜ କବିଙ୍କର ଚିନ୍ତା ବିଶେଷରେ ଧାରଣା ଓ କଳ୍ପନା । ଆଲୁଅର ତେଜ, ପରିସ୍ଥିତିର ସ୍ଥିତି, ସ୍ଥାନର ଦ୍ୟୋତନା, ଘଟଣାର ଚମକ—ଗୀତ, ବାଜା, ବିଳାପ, ଦୁଃସମ୍ବାଦ—ସ୍ଥୁଳ ଦେହ ଭିତରେ ବରଡ଼ା ପତ୍ର ପରି ଥର ଥର ଭାବନା ଗୁନ୍ଥିବାର ସରଳ ଚର୍ଚ୍ଚା—ନିଜେ ନ ଜାଣି ନାନା ରାଗିଣୀରେ ମଣିଷ ଗୀତ ବୋଲେ ।

ମନ ଭିତରର ଅନ୍ଧାରିଆ ଗୁମ୍ଫା ଚିରନ୍ତନ ଅନ୍ଧାର । କବାଟରେ ଶିକୁଳି ।

ସେଇ ପର୍ଦ୍ଦାରେ ସବୁ ଭାବନା ଭିତରେ ତାଳ ହୋଇଯାଏ କେତେ କେତେ ସ୍ୱପ୍ନର, ଭୁଲ ପାଇବାର, ଯାପି ଧରିବାର ଅଦ୍ଭୁତ ଧାରଣା, କେତେ ଅନୁଭୂତ ଲଦାଲଦି, କେତେ ଛନ୍ଦ କଟାକଟି । ମନ ଭିତରର ଅନ୍ଧାର କଣ ଭିତରେ ଅସଂଖ୍ୟ ଜନ୍ତୁଙ୍କର ମୁହଁ ଦିଶି ପୁଣି ଲୁଚିଯାଏ । ସମସ୍ତ ଯାହାହେଉ, ପରିସ୍ଥିତି ଯାହାହେଉ, ଫଳତ କିମ୍ବା ଯାହାହେଉ, ମନ ଭିତରେ ଅନ୍ଧାର ଗଡ଼ଆଖାନା ସବୁବେଳେ ପୂର୍ଣ୍ଣ, କେବେ ଫାଙ୍କା ନୁହେଁ ।

ସ୍ୱପ୍ନ !—କେବଳ ଗୋଟିଆ ପର୍ବତ ଆଉ ଶାଉଁଳିଆ ପାହାଡ଼ର ଡାଲୁ । ଆଉ ଅନ୍ଧାରୁଆ ଗହ୍ୱର ଭିତରେ ସୁଲୁ ସୁଲୁ ପାଣି । ଉଚ୍ଚ ଖାଲ, ମଝିରେ ଆଉ ପୋଖରୀ, ଗଛ ଆଉ ଧାନକ୍ଷେତ, ବାହାରର ପୃଥିବୀରୁ ମନର ଛପିଲା ଇଚ୍ଛା ଅନୁଯାୟୀ ରୂପାନ୍ତରିତ ଚିତ୍ର ।

ସେଇ ସେ ସ୍ୱପ୍ନର ଦେଶ ।

ଏଠି ଆକାଶରେ ଶାଢ଼ୀର ଧଡ଼ି ଦିଶେ, ନାନା ବର୍ଣ୍ଣର କଣୋଷ ଦିଶନ୍ତି, ଧୂଡ଼ି ପରି ଉଡ଼ି ବୁଲନ୍ତି, କାହାର ମୁହଁର ଦେହର ବିଶିଷ୍ଟ ବିଶିଷ୍ଟ ଛବି, କାହାର ଆଖି ଯୋଡ଼ିକ, କାହାର ଗଣ୍ଡରୁ ଫାଳେ, କାହାର ନାକ, କାହାର ଓଠ, ସେଠି ଏଇ ଭଗ୍ନାଂଶ ଦିଶନ୍ତି ।

ଯେକୌଣସି ଅଂଶକୁ ନିରେଖି ଦେଖିଲେ ଆକାଶର ରଙ୍ଗ ବଦଳିଯାଏ । ଛବି ବଦଳିଯାଏ ।

କାହା ଛନ୍ଦରେ କୋଇଲି ବୋବାଏ । କାହା ଛନ୍ଦରେ ଡାଆଣିଆଁ ଖବରେ ଲେଞ୍ଜଣୀ ଟାଣି ସାଧନ ଭାଙ୍ଗନ୍ତି ।

ଯେତେବେଳଯାଏ ମଣିଷ ନିଜର ସବୁଯାକ ଭଲ ପାଇବାରୁ ବେଶି ଭାଗ କୌଣସି ଗୋଟିଏ ନାରୀ ଉପରେ ଅଜାଡ଼ି ଦେଇ ନ ଥାଏ, ତା'ର ପ୍ରବଣତା ଥାଏ ଅତି ଅଧିକ । ଦେହ ତା'ର ସ୍ୱାଣ୍ଡ ହେଲେ ସୁଦ୍ଧା ମନ ତା'ର ପ୍ରଜାପତି । ଭୁଣ୍ଡରେ ଅସ୍ୱୀକାର କଲେ ସୁଦ୍ଧା ତା'ର ମନ-ଦର୍ପଣରେ ଛବି ପଡ଼ିବାକୁ ସେ ରୋକିପାରେ ନାହିଁ । ଦର୍ପଣ ତା'ର ଜଳକା ହୋଇ ନ ଥାଏ ।

ସବୁ ଛବି ଲିଭିଯାଏ, ଅଶେଷ ପ୍ରବଣତା ଶେଷ ହୁଏ । ଫାଙ୍କା ଗୁହାଳର ଭୁଛା ଗୋରୁ-ବନ୍ଧା ଖୁଣ୍ଟଗୁଡ଼ାକ ଗଣି ଗଣି ମଣିଷ କହେ, ଉଡ଼ନ୍ତା ଟଇ, ଗୋବିନ୍ଦ ସ୍ୱାହା, ଆପଣାକୁ ବୋଧଶୋଧ କରି ସେ ଶାନ୍ତ ହୁଏ ।

ସେତେବେଳେ ସେ ଢୋଲ ପିଟି ପିଟି ବଡ଼ ପାଟିରେ ପ୍ରଚାର କରିବସେ, ସେ ସ୍ଥବିର, ସେ ପ୍ରବୀଣ, ସେ ଋଷି, ସେ ସ୍ଥିତପ୍ରଜ୍ଞ । ସେତିକିବେଳେ ତାକୁ ଅବସର ମିଳେ ବର୍ଦ୍ଧିଷ୍ଣୁ (?) ସମାଜ ପାଇଁ ଶାସନଖସଡ଼ା ତିଆରି କରିବାକୁ, ସେତିକିବେଳେ ସେ ମାନ ଖୋଜେ, ଅପମାନ ବୁଝେ, ବସି ବସି ଅଙ୍କ କଷି ତିଆରି କରେ ବଡ଼ ବଡ଼ ଫର୍ଦ୍ଦ, ବ୍ୟାକରଣ ଲେଖେ ।

ସାନ ସାନଙ୍କ ଦଉଡ଼ଧାପଡ଼ ହାତ ଛଟାଛଟିକୁ ସେ ହେୟଜ୍ଞାନ କରେ, କହେ, "ଜଗତ୍ ମରଣଶୀଳ, ସଂସାରରେ ଦୁଇପଥ, ପାପ ଆଉ ପୁଣ୍ୟ, କାମନା ତ୍ୟାଗ କର, ଗୋଟାଏ ହାତରେ ଧର୍ମର ଠେଙ୍ଗା ଓ

ଆଉ ହାତରେ ପୁଣ୍ୟର ଟର୍ଚ୍ଚ ଲାଇଟ୍ ଧରି କର୍ତ୍ତବ୍ୟ ପଥରେ ଏକମୁହାଁ ହୋଇ ଶୂନ୍ୟ ଆଡ଼କୁ ପ୍ରଧାବିତ ହୁଅ ।”

ସେହି ବେଳେ, ଯେତେବେଳେ ଥୋମଣି ତନେ ହିଣ୍ଡସ୍ ଟବୁକ ବାହାରେ, ଦେହରେ ଚର୍ବି ଲଗେ, ପେଟ ଓହଳେ ।

ଏହିମାନଙ୍କୁ ଅବହେଳା କରି ଯେ ନଷ୍ଟତା ଲେଖେ, ସେ ଦୁଃସାହସିକ, ଯେ ସ୍ୱେରଦଉଡ଼ି କଟା, ତା'ର ଭାଗ୍ୟ ଅନିଶ୍ଚିତ । କାରଣ ଏହି ପ୍ରଜ୍ଞମାନେ, ସ୍ଥବିରମାନେ ପୃଥିବୀର ଅନ୍ନର ଭଣ୍ଡାରେଇ ତରୁଣର ଅଭିଯାନକୁ ଏମାନଙ୍କର ଏକମାତ୍ର ଅମୋଘାସ୍ତ୍ର ପଡ଼କାଠ୍ । ତରଳ ସରଳ ସାହିତ୍ୟକୁ ଚୁଲିରେ ବସେଇ ଏମାନେ କରନ୍ତି କାଠୁଆ, ଏମାନେ ଆଇନ୍ ଗଢ଼ନ୍ତି, ଯେଉଁଥିରେ ତରୁଣର କଳ୍ପନାରେ କାଠର ଗୋଡ଼ ଲାଗେ, ସେ ଖଟ୍ ଖଟ୍ କରି ମାଟିରେ ଚାଲେ । ଅନୁସନ୍ଧାନର ନୂତନ ଶୈଳୀକୁ ଏମାନେ ନାଲି ଆଖି ଦେଖାନ୍ତି, ଏମାନଙ୍କର ଅସ୍ତ୍ର ଆଇନ୍, ଧରପଗଡ଼ ।

ଯାହା ସେମାନେ ପାସୋରିଛନ୍ତି, ତାହା ଏମାନଙ୍କୁ ସ୍ମରଣ କରାଇ ଦେବାକୁ ଏମାନେ ପାପ ବୋଲି ମଣନ୍ତି । ଆପଣା ବିରୁଦ୍ଧରେ ଏହିପରି ଏମାନଙ୍କର ଅଭିଯାନ ।

ଆଷାଢ଼ ଆସିଥାଏ, ପହିଲ ପହିଲ ହାଣ୍ଡିଶୁଣ୍ଢିଆ ମେଘ ପଛେ ମଛେ ଝୁରୁଝୁରୁ ହାଲୁକା ମେଘ । ସେଇ ଧୋବ ଫରଫର ଝୁରୁଝୁରୁ ଛଟରେ ପହଁରି ପହଁରି ହଜେ ଯକାନ୍ତି ଧକାନ୍ତି ଗାଡ଼ିଏ ଆସି ପହଞ୍ଚିଲ

ଆମର ପଡ଼ଶା ବସାରେ । ପୁରୁଣା ଭଡ଼ାଟିଆ କେଉଁଆଡ଼କୁ ଉଠି ଯାଇଥା'ନ୍ତି । ନୂଆ ଭଡ଼ାଟିଆ ଓହ୍ଲେଇଲେ ।

ଗ୍ରେଟିଆ ହୋଇ ମଝି ଦାଣ୍ଡରେ ଗୋଟିଏ କୋଠାଘର, ଛାତ ଉପରକୁ ଉଠିବାକୁ ସିଡ଼ି ଅଛି । ଯାମ୍ନାରେ ଗୋଟିଏ ଆଲୁଅ ଖୁଣ୍ଟି ।

ଏଠି ଆଗେ ଯେଉଁ ପରିବାର ଥିଲେ ପୃଥିବୀ ତାଙ୍କର ହାଲଚାଲ ବେଶି ଜାଣି ନ ଥିଲା । କଚେରି ବେଳକୁ ଅଳ୍ପ ସମୟ ଆଗରୁ ମୋଟା-ସୋଟା ହୋଇ ବରବୁଡ଼ା ଭଦ୍ରଲୋକ ଜଣେ ଚଶମା ଲଗେଇ ଛତାଟିଏ ଧରି ଚାଲି ଯା'ଉଥିଲେ, ଆସୁଥିଲେ ପ୍ରାୟ ପାଞ୍ଚଟାବେଳକୁ । ଘରେ ମଧ୍ୟବୟସ୍କା ଜଣେ ସ୍ତ୍ରୀଲୋକ, ଅନେକ ଅଳଙ୍କାର ନାଆନ୍ତି, ଜଣେ ବୁଢ଼ୀ ଏବଂ ଚାରୋଟି ସାନ ସାନ ପିଲା ।

ସେ ଘରର ବିଶିଷ୍ଟତା କିଛି ନ ଥିଲା । ବେଳେବେଳେ ପିଲାଙ୍କ ପାଟି ଶୁଭେ । କାନ୍ଦଣା ଶୁଭେ । ଝରକାଗୁଡ଼ାକ ସବୁବେଳେ ବନ୍ଦ ଥାଏ, କୋଠା ଉପରକୁ ଯିବାକୁ ସମସ୍ତିଙ୍କି ମନା । ଦାଣ୍ଡ ପ୍ରାୟ ଖାଲି ଥାଏ । ବେଳେ ବେଳେ କେହି କେହି ବୁଲି ଆସନ୍ତି ବାହାରେ ଖଣ୍ଡେ ସତରଞ୍ଜି ପଡ଼େ, କେବେ କଦବା ।

ତଥାପି ଗୋଟାଏ ନଜରଦେଖା ଛବି ଯେମାନେ ଚାଲିଗଲେ, ସେ ଜାଗାଟା ଖାଲି ।

ନୂଆ ଭଡ଼ାଟିଆ ଆସିଲେ । ଗାଡ଼ିରୁ ଓହ୍ଲାଇଲେ । ସତର ଅଠର ବର୍ଷର ଦୁଇଟି ଝିଅ, ଜଣେ ପ୍ରୌଢ଼ା, ହସ ହସ ହୋଇ ଜଣେ ଭଦ୍ରଲୋକ । କାଳିପର ଲାଗୁଛି, ସବୁ ମନେଅଛି, ସେଦିନ ଥାଏ ରବିବାର ଛୁଟି ।

ଦୁଇଘଣ୍ଟା ପରେ ଗୋଟିଏ ଛାତ୍ରର ପ୍ରଶ୍ନ ଉତ୍ତର ଖାତା ନିରେଖି ନିରେଖି ଦେଖୁଥିଲି, ଧ୍ୟାନଭଙ୍ଗ ହେଲା, ଘରି ଖୁସିବାସିଆ ହସ ଶୁଭିଲା । କୌତୂହଳ ଜନ୍ମିଲା, କିଏ ? କଥା କ'ଣ ? ସେହିଦିନ ଛଇ-ନେଇଟାବେଳେ କୌତୂହଳ ଭାଙ୍ଗିଲା । ସେ ଘରର ଛାତ ଉପରେ ଦୁଇଜଣ ଟହଲିବାକୁ ବାହାରିଲେ । ଧୋବଶାଢ଼ୀ ଆଉ କଳାଶାଢ଼ୀ । ଧୋବଶାଢ଼ୀ ଗୋଲ ମୁହଁ, ଟିକିଏ ଗମ୍ଭୀର, ମୋଟାମୋଟି ହୋଇ କୁନ୍ଦିଲା

ପରି । କଳାଶାଢ଼ୀ ଧାରି ମୁହଁ, ମୁହଁରେ ଗମ୍ଭୀରତା ଟିକିଏ ବୋଲି ନାହିଁ । ଧୋବଶାଢ଼ୀ ଶ୍ୟାମଳୀ । କଳାଶାଢ଼ୀ ଗୋରୀ ।

କୌତୂହଳ ବଢ଼ିଲା । ନାନା କାରଣରୁ ଉପରକୁ ଅନାଇବାକୁ ମନ ହେଲା—ଆକାଶର ବର୍ଣ୍ଣ କିପରି, ଚଳନ୍ତା କପଡ଼ା ଉଡ଼ୁଛି । ଘୁରନ୍ତା ସରି ଆସିଥାଏ । ଅଳ୍ପ ଖରା ।

କଳାଶାଢ଼ୀ ହସର ଅପାଦାନ, ଧୋବଶାଢ଼ୀ ଅତି ବେଶିରେ ହସର ଅଧିକରଣ ବା । କିଛି ସମୟ ପୂଜାକୁ ଯାଉଁକୁ ଅନେଇଁ ଘରପାଖରେ ପରିସ୍ଥିତି ଦେଖାଗଲାହିଁ । କରିପାରି ଦୁହେଁ ଛକକୁ ଓହ୍ଲାଇ ଗଲେ । ନିର୍ବାକ୍ ହୋଇ ଆହୁରି ଥୋଡ଼ାଏ ବେଳ ଆକାଶରେ ରଙ୍ଗ ଦେଖିଲି । ପରେ ଧୀରେ ଧୀରେ ବୁଲି ବାହାରିଗଲି ।

ରାତିର ପହିଲା ପହରରେ ସେଇ ଘରୁ ପ୍ରାର୍ଥନାର ଗମ୍ଭୀର ଗୁଞ୍ଜନ ଶୁଣାଗଲା । ଘଣ୍ଟି ଟିଂ ଟାଂ, ପୁଣି ସବୁ ବନ୍ଦ ।

ରାତିସାରା ବଡ଼ ଫୁଙ୍କିଫୁଙ୍କି ବହୁତ ବେଳ ଭାବିହେଲି— ସଂସାରରେ କେହି କାହାର ନୁହେଁ ସତ, କିନ୍ତୁ ବାଜେ ଲୋକଙ୍କ ପାଇଁ ଭାବି ଭାବି ଯେତେ ସମୟ ନଷ୍ଟ ହୁଏ, ସେଥିରେ ଅନେକ କାମିକା କାମ ବୋଧହୁଏ କରି ହେଉଥାନ୍ତା । ସେପରି ଭାବନାରେ ବି ଆନନ୍ଦ ଆସେ ।

ମନ ପ୍ରତୀକ୍ଷା କରି ରହିଲା, ଭବିଷ୍ୟତର ଆହୁରି ମଧୁର ମୁହୂର୍ତ୍ତକୁ । ତହିଁଆର ଦିନ ବଡ଼ି ସକାଳୁ ନିଦ ଭାଙ୍ଗିଲା ପରେ ଯାନ୍ତ୍ରାରେ ସେ ଘରର ଝରକା ଆଡ଼କୁ ଅନେଇଁ ରହିଲି । ହଠାତ୍ ସେ ପାଖର ବୁଜା ଝରକା ଅସୁନ୍ଦର ଝରକା କାହିଁକି ସକାଳୁ ଏତେ ଦେଖିବାକୁ ଭଲ ଲାଗିଲା ମୁଁ କହିପାରିବି ନାହିଁ । କିନ୍ତୁ ବୋଧହୁଏ ଦିନର ଆରମ୍ଭ ସକାଶେ ସେଇ ଝରକା ସେପାଖେ ମନ ଗୋଟାଏ ଉତ୍ତର ଖୋଜୁଥିଲା । ତା'ରି କଥା କହେଁ ।

କିଛି ସମୟ ପରେ ଝରକା ଅବାଜ୍ କରି ଖୋଲିଲା, ଦିଶିଲା ଜଣେ ପ୍ରୌଢ଼ାଙ୍କ ମୁହଁ । ନିତାନ୍ତ ହଢ଼ଗ୍ଧ ଅପରିଚିତ ଦୃଷ୍ଟିରେ ସେ ମୋ ଝରକା ଆଡ଼କୁ ଅନାଇଲେ । ତା'ପରେ ସେଠୁ ଚାଲିଗଲେ ।

ଦିନମାନ କାମକାର୍ଯ୍ୟରେ ବୁଲି ବୁଲି ସେପଟେ ସୁଦ୍ଧା ଘୁଁକୁ ଘୁଏଁ ମନ ଦିସା ଖୋଜୁଥାଏ । କାମକାର୍ଯ୍ୟରେ ମନ ଲାଗିଲା ନାହିଁ । ପୁଣି ପାଞ୍ଚଟା

ପରେ, କୋଠାର ଛାତ ଉପରେ ଯେ ଦୁହେଁ ଉଠିଲେ । ନିତାନ୍ତ ଅନ୍ୟ-ମନସ୍କଭାବେ ବହିଖଣ୍ଡେ ଧରି ମୁଁ ପୁଣି ସେହି ଦଗର ଆକାଶକୁ ଚାହିଁ ଖୋଜିବାକୁ ସେ ଆଡ଼କୁ ମନ ଦେଲି । ସଞ୍ଜବୁଡ଼େ ପୁଣି ସେହି ପ୍ରାର୍ଥନା ଆଜି ସେ ଘଣ୍ଟି ।

ଭାବିଲି—କ'ଣ ଏମାନେ ଠାକୁରଙ୍କ ପାଖେ ଗୁହାରି କରନ୍ତି ? ଯୋଡ଼ାଏ ଝିଅ, ଦୁହିଁଙ୍କ ଭବିଷ୍ୟତ ନଆଗ, ବାପ ମା ଦୁହେଁ—କେଉଁ ଅଖୋଡ଼ୁଆ ପଥର ଉପରେ ଏଇ ଭାଇଜଣଙ୍କ ମନ ଏକାଠି ହୋଇ ଏକା ଠାକୁର ଆଡ଼କୁ ଲାଗିଛି କି ପଡ଼େ ? ସେମାନେ ଠାକୁରଙ୍କୁ ଭାବୁଥିଲେ । ଛାପସିତ ଆଦର୍ଶ ଯଦି ଠାକୁରଙ୍କର ସଙ୍ଗୀ ନିଷ୍ଠପୂ ଏମାନଙ୍କର ପରସ୍ପରଙ୍କ ଠାକୁର ପରସ୍ପରଠାରୁ ଭିନ୍ନ ହୋଇଥିବେ । ମା' ଝିଅ ଦେଖିଲେ ପଶିଲେ—କୁହେଁ ? ମୁଁ ଭାବୁଥିଲି ସେମାନଙ୍କୁ ।

ଚାହିଁ ଆରମ୍ଭଦିନଠାରୁ ସଞ୍ଜବୁଡ଼େ ମୁଁ ମଧ୍ୟ ପ୍ରାର୍ଥନା ଆରମ୍ଭ କରି-ଦେଇଥିଲି । ଇସ୍କୁଲରେ ସଂସ୍କୃତ ପଢ଼ିଥିଲି ଏବଂ ପ୍ରାର୍ଥନା ଶ୍ଳୋକର ଏଠୁ-ସେଠୁ ମଧ୍ୟ ଟିକିଏ ଟିକିଏ ମନେ ଥିଲା । ମୁଁ ପ୍ରାର୍ଥନା କରେଁ—

"ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।"

ସମସ୍ତଙ୍କର ସୁଖ କଳ୍ପନା କଲାବେଳକୁ ମୋ ଆଖି ଆଗର ସେ ଦୁଇଟି ପ୍ରାଣଙ୍କ ସୁଖର କଥା ମଧ୍ୟ ମୋର ମନେ ଥାଏ । ସେମାନଙ୍କର ଚେହେରା ଥରେ ମନେ ପଡ଼ିଯାଏ, ମୁଁ ମନେ ମନେ କହେଁ, "ଭଲ ହେଉ, ଭଲ ହେଉ ତୁମର, ସୁଖରେ ଥାଅ ।"

ଅଳ୍ପ କେଇଟା ଦିନ ଭିତରେ ସେ ଘରର ଚେହେରା ବଦଳିଗଲା, କବାଟରେ ଝରକାରେ ପର୍ଦ୍ଦା, କୋଠା ଉପରେ ଫୁଲକୁଣ୍ଡ, ଦୁଆର-ମୁହଁରେ ଟେବୁଲ୍ ଚୌକି ଭର୍ତ୍ତି । ଭିତର୍‌ରେ ବାହାରେ ଯୋର୍ ଶବ୍ଦ ।

ଘରର ମାଲିକଙ୍କୁ କେତେ ଥର ଦେଖିଛି—ସୁନ୍ଦର ଚେହେରା, ହସ ଭଦ୍ରଲୋକ, ରିକ୍ସା ଚଢ଼ି ଯା'ଆସ କରନ୍ତି । ଉପରେ ପଡ଼ି ଚାହିଁଲା ହସ ପରିଚ ହେବାକୁ ମନ ହୁଏ । ଭାବେଁ, ଭାରି ମେଳାପି ଲୋକଟିଏ ତ,

କରୁ ଅଟକ ଯାଏଁ । ସହରରେ ସମସ୍ତେ ସମସ୍ତଙ୍କୁ ଦେଖନ୍ତି, ଶଙ୍କାପରେଚ ହେବାକୁ ପାରୁଛନ୍ତି ଯାଆନ୍ତି ନାହିଁ ।

ପରେଚଯ୍ୟ ହେଲ ବଡ଼ ଆଶ୍ଚର୍ଯ୍ୟ ଉପାୟରେ । ସେମାନେ ସେ ଘରକୁ ଆସିବାର ପ୍ରାୟ ମାସେ କାଳ ହୋଇ ଯାଇଥାଏ । କୋଠା ଉପରକୁ ଅନେଇ ରହିବ ହାଇଁପାଇଁ ହେବାର ଅବସ୍ଥା ଘଟି ଯାଇଥାଏ, ଉଭୟ ପକ୍ଷ ପ୍ରାୟ ଶାନ୍ତ ଥାଉଁ । ଦିନେ ଆମ ଘାଙ୍କ ପଡୁଆ ସେଇ ରଘୁବାବୁ ସିଲ୍କ ପଞ୍ଜାବୀ ପିନ୍ଧି ଲମ୍ବା କୁଞ୍ଚ ଓହଳେଇ ହସ ହସ ମୁହଁରେ ଆସି ପହଞ୍ଚିଯାଇ କହିଲେ, "ରଘୁ, ଜାଣିଚୁ ମୋ'ର ବରଘର ହେଉଚି ।" ରଘୁବାବୁ ବ୍ରାହ୍ମଣ, ହାଲ ସେକ୍ରେଟେରିଏଟ୍‌ରେ ଖଣ୍ଡିଏ ବଡ଼ ଗୁଇନ ପାଇଥାନ୍ତି ।

ଆସନ୍ନ ଭୋଜୀ ଓ ବାହାଘରର ମଉଜମଜ୍‌ଲିସ୍ କଳ୍ପନା କରି ଖୁବ୍ ଖୁସିହୋଇ ମୁଁ ପଚାରିଲି, "କେବେ ? କୋଉଠି ?"

ରଘୁବାବୁ କହିଲେ—"ତୋ'ର ବସା ସେପାଖେ ଯେଉଁ ନଳିନାକ୍ଷ କର ଅଛନ୍ତି ତାଙ୍କରି ଘରେ । ଜାଣିଛୁ ତ ନଳିନାକ୍ଷବାବୁ ଏଠିକି ବଦଳି ହୋଇ ଆସିଛନ୍ତି । ଶୁଣୁଛୁ ଝିଅ ଯୋଡ଼ିକ ଟିକିଏ ଟିକିଏ ପାଠ ପଢ଼ିଛନ୍ତି ବୋଲି, ପ୍ରାୟ ସବୁ ଠିକ୍ ଠାକ୍ । ଜାଣିଛୁ ତ ମୁରବି ହେବାକୁ ସଂସାରରେ ମୋ'ର କେହି ନାହାଁ, ଆଉ ନିଜେ ଥରେ ନ ଦେଖିଲେ ମୁଁ ବାହା ହବାକୁ ପ୍ରସ୍ତୁତ ନୁହେଁ, ତେଣୁ ଠିକଣା ହୋଇଛି ଆଜ ସନ୍ଧ୍ୟାରେ ମୁଁ ଯିବି, ତୁ ବି ମୋ ତରଫରୁ ମୋ ସାଙ୍ଗରେ ଯିବୁ ବୋଲି ମୁଁ ଖବର ପଠେଇଚି ।"

ମତେ ଖରାପ ଲଗିଲା । ମୁଁ କହିଲି, "ବାହା ହବୁ, ଖୁବ୍ ଭଲ କଥା, କରୁ ଭାଇ, ବାହାହବା ସବୁ ଠିକଣା ତ ? ଦେଖ, ବ୍ରାହ୍ମଣ ଘର, ତୁ ପୁଣି କନ୍ୟା ଦେଖିବୁ ବୋଲି କହୁଛୁ, ସବୁ ଦେଖାଦେଖି କରିସାରି ସେବ ମୁହଁ ମୋଡ଼ିଦବୁ ତେବେ କ'ଣ କଥାଟା ଠିକ୍ ହବ ଭାଇ ?"

ରଘୁ ଆଶ୍ଚର୍ଯ୍ୟ ହେଲା । "ମୁହଁ ମୋଡ଼ଦେବି ? ଏଁ, ତୁ ବୋଧେ ଦେଖିଚୁ ? କହ, କ'ଣ ନିତାନ୍ତ ଅସୁନ୍ଦର ? ବଡ଼ ସିରିୟସ୍ କଥା ତ ? ମୁଁ ତ ପ୍ରାୟ ଜବାବ୍ ଦେଇ ଦେଇଛୁ ।"

ମୁଁ କହିଲି—"ମୋ କଥାକୁ ଓଲଟା ବୁଝିଲୁ ପରା । ନା, ମୁଁ ସେମାନଙ୍କୁ ଆଦୌ ଦେଖି ନାହିଁ, କି ମୁଁ କହୁ ନାହିଁ ସେମାନେ ଅସୁନ୍ଦର ହୋଇଥିବେ ବୋଲି—"

ସେ ବାଧାଦେଇ କହିଲା—"ସେମାନେ ! ତା'ହେଲେ ତୁ ନିଶ୍ଚୟ ଦେଖିଛୁ । କହ କହ !"

ମୁଁ ବଡ଼ ଅଡ଼ୁଆରେ ପଡ଼ିଲି । କହିଲି, "ହଁ ଦେଖିଛି, କିନ୍ତୁ ପର ଝିଅଙ୍କ ରୂପରେଖ ଚର୍ଚ୍ଚା କରିବା ମୋ'ର ଉଚିତ ହେବନାହିଁ । ସେମାନେ ସୁନ୍ଦର । କିନ୍ତୁ ତୁ—ମାନେ, ଆଗ ଗୋଟାଏ ଫାଇନାଲ କରି ତା'ପରେ ଦେଖିଯିବା ଭଲ । ତା'ପରେ ମୁଁ ତ ତୋ'ର ଜାତିର ଲୋକ ନୁହେଁ, ମୁଁ ବଣିଆଁ, ତୁ ବ୍ରାହ୍ମଣ । ମତେ ନେଇ ପରଘରକୁ ବୋହୂ ଦେଖିବାକୁ ଯିବା କି ଦରକାର ?"

ସେ ମତେ ଛାଡ଼ି ଦେବାକୁ ରାଜି ହେଲାନାହିଁ । କହିଲା, "ତୁ ତ ଆଜି ବାହାହବାକୁ କହୁନାହୁଁ, ମୁଁ କହୁଚି, ତେଣୁ ଖାଲି ସାଙ୍ଗରେ ଯିବାକୁ ତୋ'ର ଏତେ ଆପତ୍ତି କାହିଁକି ? ତୁ ନ ଗଲେ ମୋ'ର ହୋଇ ମୋ ତରଫରୁ ବା ଯିବ କିଏ ? ତତେ ଯିବାକୁଇ ପଡ଼ିବ । ସେମାନଙ୍କ ତରଫରୁ ବି ଦ୍ୱିଧା କରିବାକୁ କୌଣସି କାରଣ ନାହିଁ । ମୁଁ ଯାହା ଶୁଣିଛି ସେମାନେ ଖୁବ୍ ଆଡ୍‌ଭାନ୍‌ସ୍‌ଡ୍ ।"

ସେ ଦିନର ସଞ୍ଜ ବି ମୋ'ର ମନେଅଛି ।

ଆଧୁନିକତାର ଯେତେ ଅପରୂପ ଧାରଣା ନୂଆ ଯୁଗକୁ ଗଢ଼ି ଲଗିଛି, ଅବିଆଡ଼ା ଟୋକା ଅବିଆଡ଼ୀ ଝିଅଙ୍କୁ ବୋହୂ-ଦେଖା ଦେଖିବାର ଧାରଣା ମଧ୍ୟ ତା' ଭିତରୁ ଅନ୍ୟତମ । କିନ୍ତୁ ମୋ'ର ମଫସଲ ପ୍ରାଣ ଭାବୁଥାଏ, ଅଦ୍ଭୁତ ହେଉ ହେଉ କିଛି ଗୋଟାଏ କିଂଭୂତ ହୋଇ ବସିବ ପରା ! ମୁଁ ଭାବିପାରୁ ନ ଥାଏଁ କ'ଣ କେମିତି ହେବ । ନିରୋଳାରେ ବସି ଆକାଶର ଚଢ଼େଇକୁ ନିଘା କରୁ କରୁ କୋଠା ଉପରକୁ ଘେରେଇ ଘେରେଇ ଅଣେଇବା ଗୋଟାଏ ରକମ, ମୁହାଁମୁହିଁ ବୋହୂଦେଖା ଦେଖିବାକୁ ଯିବା ଅନ୍ୟ ରକମ । ମୋ'ର ଉତ୍ସାହ ଦବି ଯାଇଥାଏ ।

କିନ୍ତୁ ଅଖାଡ଼ୁଆ କିଛି ହେଲନାହିଁ । ମୁଁ ଆଉ ରଘୁ ଦିହେଁ ପହଞ୍ଚିଲୁଁ । ନଳିନାକ୍ଷବାବୁ ପଦାରେ ବସି ଫାଇଲ୍ କାମ କରୁଥିଲେ । ରଘୁ ଆଗ ବଳିପଡ଼ି କହିଲା, "ମୁଁ ରଘୁନାଥ ।"

ନଳିନାକ୍ଷବାବୁ ଚମକି ପଡ଼ିଲେ, କହିଲେ, "ଆରେ—ଆସନ୍ତୁ ଆସନ୍ତୁ ।"

ଆମେ ଉଠିଁ ବସିଲୁଁ । ନଳିନାକ୍ଷବାବୁ ଟିକିଏ ଅପ୍ରସ୍ତୁତ ହେଲାପରି ଲାଗିଲେ । ସୁଧାରି ନେଇ ଅତିଶୟ ମିଳାମିଶା ହେବାକୁ ଚେଷ୍ଟା କଲେ । ଗୁଣ୍ଡିଁଦେଇ ମୋ'ର ପରିଚୟ ମାଗିବାରୁ, ରଘୁ ଚିହ୍ନେଇ ଦେଲା, "ମୋ'ର ବନ୍ଧୁ ରାଧେଶ୍ୟାମ ସାହୁ । ବି.ଏ. ପାଶ୍ କରିଛନ୍ତି, ଆଇ.ପି. ପାଇଁ ଦରଖାସ୍ତ ଦେଇଛନ୍ତି ।"

ସତକୁ ସତ ଆଇ.ପି. ଚାକିରି ପାଇଁ ମୁଁ ସେତେବେଳେ ଖଣ୍ଡିଏ ଦରଖାସ୍ତ ଦେଇ ଅବସର ସମୟରେ ଦଣ୍ଡ ବୈଠକ୍ କରୁଥାଏଁ ।

ନଳିନାକ୍ଷବାବୁ ସସମ୍ମାନରେ ମୁଣ୍ଡଟେକି ମତେ ଅନେଇଲେ । ମୁଁ ଆଗ ବଳପଡ଼ି ମୋ'ର ସବୁଯାକ ପରିଚୟ ଦେଇଦେଲି ଓ ମୋ'ର ବସାର ସାନ୍ନିଧ୍ୟ ଜଣାଇଲି । ତା'ପରେ ନଳିନାକ୍ଷବାବୁ ରଘୁର କୁଶଳ ପଚାରିଲେ । ଆମକୁ ବସେଇ ଦେଇ ସେ ଉଠିଗଲେ, ପୁଣି ଆସିଲେ । ପାନ ଆସିଲା, କିଛି ସମୟ ପରେ ଦାଣ୍ଡଘରର କବାଟ ସେପାଖେ ଫୁସୁର୍ ଫାସୁର୍ ପାଟି ଶୁଭିଲା, ଫିସିଫିସି ହସ । ଆମର—ଅନ୍ୟମନସ୍କପଣିଆଁ, ପ୍ରତୀକ୍ଷା । ନଳିନାକ୍ଷବାବୁ ଅନର୍ଗଳ ବକ୍ତୃତା ଦେଉଥାନ୍ତି ।

ସେ ତାଙ୍କର ନିଜର ଇତିହାସରୁ କିଛି କିଛି କହୁଥାନ୍ତି । ସେ ଉତ୍ତର ବାଲେଶ୍ବର ଅଞ୍ଚଳର ଲୋକ । ତାଙ୍କର ଧାରଣା ସବୁ ଖୁବ୍ ଆଧୁନିକ । ଧର୍ମ ସମ୍ବନ୍ଧରେ ତାଙ୍କର ଉଦାର ମତ । ବି.ଏ. ପରୀକ୍ଷା ଦେଇଥିବା ପୂର୍ବରୁ ମା' ବେମାର ପଡ଼ିବାରୁ ତାଙ୍କୁ ବି.ଏ. ଛାଡ଼ିବାକୁ ପଡ଼ିଲା । ବି.ଏ.ରେ ତାଙ୍କର ସଂସ୍କୃତ ଅନର୍ସ ଥିଲା । ସେତେବେଳେ ବିଦ୍ୟାସାଗର କଲେଜରେ ଧୀରେନ୍ ଭଟ୍ଟାଚାର୍ଯ୍ୟ ଭଲ ସଂସ୍କୃତ ପଢ଼ାଉଥିଲେ । ସେ ନିଜେ ସାହିତ୍ୟ ଭଲ ପାଉଥିଲେ । ତାଙ୍କ ମତରେ ଭାରବି କାଳିଦାସଙ୍କ ଠାରୁ ବଡ଼ କବି । ତାଙ୍କ ମତରେ ହିନ୍ଦୁଧର୍ମରେ ସଂସ୍କାର ଆବଶ୍ୟକ । ଇତ୍ୟାଦି ।

ରଘୁ ଶିଷ୍ୟବୃତ୍ତି ଅବଲମ୍ବନ କରି ମୁଣ୍ଡ ହୋଇଁଥାଏ । ମୁଁ ମୁହଁ ଉପରେ ସ୍ନିଗ୍ଧ ହସଟିଏ ଯୋଡ଼ିଦେଇ ଆଶ୍ଚର୍ଯ୍ୟ ଦୃଷ୍ଟି କରି ତାଙ୍କ ଆଡ଼କୁ ମୁହଁ ବୁଲେଇ ଥାଏଁ । ଆମ ଦୁହିଁଙ୍କ କାନର ବେଚାରି ଏକାବେଳକେ ମୋହିଁଥାଏ କବାଟ ଆଡ଼କୁ ।

କିଛି ସମୟ ପରେ କମଳନାକ୍ଷବାବୁ ଚମକିପଡ଼ି କହିଲେ, "ହଁ ।" ଡାକିଲେ—"ଆଲୋ ଛବି, ତୁମ୍ଭେମାନେ ଆସ !"

ଦୁହେଁ ଆସିଲେ, ଉଭୟେ ସୁସଜ୍ଜିତା । କମଳନାକ୍ଷବାବୁ ଚହ୍ନେଇ ଦେଲେ, "ଏଇଟି ମୋ'ର ବଡ଼ ଝିଅ—ଲେଖା (ଧଳାଶାଢ଼ୀ, ଶ୍ୟାମଳୀ) ଏଇଟି ସାନ—ଛବି (କଳାଶାଢ଼ୀ, ଗୋରୀ, ସୁନ୍ଦର) । ଦୁହେଁ ମ୍ୟାଟ୍ରିକ୍-କୁଲେଶନ୍ ପର୍ଯ୍ୟନ୍ତ ପଢ଼ିଥିଲେ । ଆଉ ବେଶି ପଢ଼େଇଲି ନାହିଁ । ଘରେ ଘରେ ପଢ଼ନ୍ତି, ମୋ'ର ପଦେ ବାପ୍ପା, ଖାଲି ସାହିତ୍ୟ ।"

ରଘୁର ମୁହଁ ଆମ୍ବିଳା ପଡ଼ିଯାଇଥାଏ । ତା'ର ଦୋଷ ନୁହେଁ । ଲେଖା ଆଉ ଛବିଙ୍କି ଏକାଠି ଆଣିବା ଠିକ୍ ହୋଇ ନ ଥିଲା । କମଳନାକ୍ଷ-ବାବୁ କହି ଲାଗିଥିଲେ, "ଏଇ ଲେଖାଟି ଠିକ୍ ସାକ୍ଷାତ୍ ଲକ୍ଷ୍ମୀ, ଏତେ ଶାନ୍ତ, ଆଉ ଏ ଛବି ଚହ୍ଲି ଥାନ୍ତୁ ପ୍ଳାଳୁ, ରଘୁନାଥବାବୁ, ଆପଣଙ୍କୁ ବଡ଼ ହଇରାଣ କରିବ—ସାକ୍ଷାତ୍ ବିଛୁଆତି ଲତା, ନୁହେଁ ଲୋ ଛବି ? ସବୁବେଳେ ନୁଟ୍ଟୁରୁ କୁଟ୍ଟୁରୁ ।"

ମନକୁ ମନ ସେ ଲେଖାର ଶାନ୍ତପଣିଆ ବିଷୟରେ ବକ୍ତୃତା ଦେଉଥାନ୍ତି । ଫଳ ଭଲ ହେଉ ନ ଥାଏ । ମୁଁ ଦେଖିଲି ସେ ଧରି ନେଇଥାନ୍ତି ଯେ ରଘୁ ତାଙ୍କର ନିସର୍ଗସୃଷ୍ଟ ଜାମାତା । ତାଙ୍କର ସଂକୋଚ ନ ଥାଏ । "ମୁଁ ଏ ଆଡ଼ ଉଡ଼ୁଆଳର ପକ୍ଷପାତୀ ନୁହେଁ ! ରାଧେଶ୍ୟାମବାବୁ ! ଶାସ୍ତ୍ରରେ ଏ ସବୁ କଥା ଲେଖା ନାହିଁ, ବୃଥା କଷ୍ଟ ।" ତାଙ୍କର ମୁହଁ ଚାଲିଥାଏ ।

ଲେଖା କିଛି ସମୟ ରହି ଚାଲିଗଲା, ଛବି ଏପାଖ ସେପାଖ ହେଉଥାଏ । କେତେ ଥର ଛବି ଓ ମୋ'ର ଚାହାଁଣୀ ଏକାଠି ଭେଟିଲା । ସେ ସଂକୋଚ କଲା ନାହିଁ । ରଘୁ ପଚାରିଲା, "ଆପଣଙ୍କର ଆଡ଼ସନେଲ୍ କ'ଣ ଥିଲା ?" ସେ କହିଲେ, "ମାଥ୍‌ମେଟିକ୍‌ସ ଆଉ ଆପଣଙ୍କର ? ସଂସ୍କୃତ ବୋଧହୁଏ ?" ଛବି ହସିଲା ।

ସେତେବେଳର ସେ ଦୃଶ୍ୟର ସବୁଯାକ ମୋ'ର ଠିକ ଠିକ ହୋଇ ମନେଅଛି । ସେମାନଙ୍କୁ ଥରେ ପାଖରେ ଦେଖିସାରିଲା ପରେ ମୋ'ର ମନର ସବୁ ବିକାର କଟିଯାଇଥିଲା । ମୁଁ କଠିନ ହୋଇ ଭାବିବାକୁ ଚେଷ୍ଟା କରୁଥିଲି ।

ଭାବୁଥିଲି—ରଘୁନାଥ ଆଉ ଯାହାହେଉ ବେକୁବ୍ ନୁହେଁ, ଯେଉଁ ବ୍ୟବସାୟ-ବୁଦ୍ଧି-ସମ୍ପନ୍ନ ରଘୁନାଥକୁ କଲେଜରେ ଏତେଦିନ ମୁଁ ଚାହିଁ ଆସିଲି, ଦେଖି ଆସିଲି, ସେ ସାଧାରଣ ବୁଦ୍ଧିରେ ଭୁଲ୍ କରିବାର ଲୋକ ନୁହେଁ ।

ଭାବୁଥିଲି—ଛବି ପାଖେ ପାଖେ ଥିବାଯାକେ ଲେଖାର ଭବିଷ୍ୟତ ଅନ୍ଧାର ।

ଦୁଇଟି ଝିଅ ସରଳ ହୋଇ ବଢ଼ିଛନ୍ତି । ସଂସାରର ଛନ୍ଦ କପଟ ଜାଣନ୍ତି ନାହିଁ । କିନ୍ତୁ ଯଦି ଏ ପ୍ରକାର, ଲେଖା ଆଡ଼େଇ ହୋଇ ରହିବ, ଛବି ଆଗକୁ ମାଡ଼ିଯିବ, ତା'ର ଅଧିକାର ଦାବି କରିବ ।

ଲେଖା ପାଇଁ ମୁଁ ଦୁଃଖିତ ହୋଇ ଫେରିଲି । ବାଟରେ ରଘୁକୁ ପଚାରିଲି, "କେମିତି ଦେଖିଲୁ ?"

"ହୁଁ"—ରଘୁ କହିଲା ।

କିଛି ସମୟ ପରେ ବାଟରେ ଖାଲି ଖାଲି ରଘୁ କହିଲା, "ଛବି ଯଦି ବଡ଼ ଗୁଣୀ ହୋଇଥାନ୍ତା—"

ମୁଁ କହିଲି, "ହୁଁ—"

ତହିଁଆର ଦିନ ସକାଳେ ମୁଁ ଟିଉସନ୍‌କୁ ଯିବାକୁ ତର ତର ହେଉଥିଲି, ନଳିନାକ୍ଷବାବୁ ଆସି ଡାକିଲେ । ବଡ଼ ହସ ହସ, ବହୁତ ଦିନର ଚିହ୍ନା ବନ୍ଧୁଟିଏ ପରି । ମନେ ମନେ ଠିକ୍ କରିନେଲି, ଆଜି ଟିଉସନକୁ ଯିବା ହେବ ନାହିଁ । ବଡ଼ ଚଞ୍ଚଳ ହୋଇପଡ଼ିଲି । କେଉଁଠି ତାଙ୍କୁ ବସେଇବି, କିପରି ତାଙ୍କୁ ଚର୍ଚ୍ଚା କରିବି—ସବୁ ମହାମୁସ୍କିଲ । ବଡ଼ ସହଜଭାବରେ ମୋ'ର ଖଟ ଉପରେ ବସିପଡ଼ି ଗୋଡ଼ ଦୋ'ଟି ହଲେଇ ହଲେଇ ସେ କହିଲେ—

"କ'ଣ ରାଧେଶ୍ୟାମବାବୁ ! ସକାଳଟା କେମିତି ଖୋଲିଛି ଭାବୁଛନ୍ତି ? ପାଶ୍ଚାତ୍ୟକ ବର୍ଣ୍ଣନା କିଛି ମନେ ପଡ଼ୁଛି ?"

ମୁଁ କହିଲି, "ଆଜ୍ଞା ନାହିଁ ।"

ପ୍ରଶ୍ନସୂଚକ ଦୃଷ୍ଟିରେ ତାଙ୍କ ମୁହଁକୁ ଅନେଇଁ ରହିଲି । ସେ ଭାବିଲେ ହୁଏତ, ସେ ଏଥର ବର୍ଣ୍ଣନାଟି ତାଙ୍କୁ ବଖାଣିବାକୁ ପଡ଼ିବ । ତେଣୁ କଥା ବଦଳେଇ ଦେଇ ସ୍ମାଡ଼ୁକୁ ସ୍ୟାଡ଼ୁକୁ ଆଖି ବୁଲେଇ ଆଣି କହିଲେ—

"ଆପଣ ବୋଧହୁଏ ଆଇ.ପି. ପରୀକ୍ଷା ପାଇଁ ଭାରି ବ୍ୟସ୍ତ ଅଛନ୍ତି । ନୁହେଁ ? କୁଆଡ଼େ ବାହାରିଛନ୍ତି ? ନାନା ପ୍ରକାର କଥା ପଡ଼ିଗଲା । ମୋ'ର ଆଇ.ପି. ପରୀକ୍ଷା କଥା, ଆଜି କଏ କଏ ପ୍ରତିଦ୍ୱନ୍ଦ୍ୱୀ ଅଛନ୍ତି । ଏ ସହରରେ ବର୍ଷା ଋତୁଟା ବଡ଼ ଅସହ୍ୟ, ନୁହେଁ ? ସାହିତ୍ୟଟା ଠିକ୍ ସେହା ଆଜି ସିଗାରେଟ୍ ପରି ତରୁଣର ଜୀବନରେ ବଡ଼ ଦରକାରୀ ଜିନିଷ । ଦଣ୍ଡ ବୈଠକ୍ ଭଲ ନା ପ୍ୟାରେଲେଲ ବାର୍ ଭଲ । ବର୍ଷାଦିନର ଖଡ଼ାଗୁଡ଼ାକ ବେଶି ମିଠା ହୁଏନାହିଁ, ଏହିପରି ବହୁତ କଥା ।

ହଠାତ୍ ସେ ଥା ଥା ମା ମା ହୋଇ ପଚାରିଲେ—"ରଘୁବାବୁ କିଛି କହୁଥିଲେ କି ନାହିଁ ?" ମୁଁ କହିଲି, "ନାହିଁ ତ ।"

ଆଜକାଲିକା ବିବାହ ବିଭ୍ରାଟ କଥା ପଡ଼ିଲା । ମୁଁ ବୁଝେଇ ଦେଲି ଯେ, ମୁଁ ନିତାନ୍ତ ମରହଟିଆ ଲୋକ, ଏତେ ନକ୍ସଟାଣକୁଟି ମୁଁ ପସନ୍ଦ କରେ ନାହିଁ ।

ସେ ନିଜର ଆଧୁନିକତାକୁ ମହତ୍ୱ ଦେଇ କହିଲେ ଯେ, ଦେଖା-ଦେଖି ବା ଫଟୋ ପଠାପଠିରେ କିଛି ଯାଏ ନାହିଁ, ଆସେ ନାହିଁ । ତହିଁରେ କନ୍ୟା ଦେହରୁ ତ ଫଡ଼ାଏ ଛିଣ୍ଡିଯିବ ନାହିଁ । ସେ କହିଲେ ଯେ ବଙ୍ଗ ଦେଶରେ ବିବାହ ବଛାବଛି ପାଇଁ ନାନା ଲଟପଟ ହେଉଛି । ଝିଅମାନଙ୍କୁ ବରମାନଙ୍କ ଆଗରେ ଗୀତ ବୋଲି ନାଚିବାକୁ ପଡ଼ୁଛି ବେଳେ ବେଳେ ।

ମୁଁ ମୋ'ର ଅର୍ଥଶାସ୍ତ୍ର ବ୍ୟାଖ୍ୟାନ କଲି, ଓଡ଼ିଶାର ଝିଅ ଓ ପୁଅ-ମାନଙ୍କ ସଂଖ୍ୟା ନିର୍ଣ୍ଣୀତ ହେଲା । କଥା ଛିଡ଼ିଲା ଯେ ଆମର ମନ ଭାରତ-ଲୋକ ବା କାଳିଦାସ-ଲୋକରେ ଥିଲେ ସୁଦ୍ଧା ଆମର ଚଳାଚଳ ଯେଉଁ ପର୍ଯ୍ୟନ୍ତ ଏ ପୃଥିବୀରେ ଅଛି, ସେ ପର୍ଯ୍ୟନ୍ତ ସେ ଅର୍ଥଶାସ୍ତ୍ରର ଅଛପା ସୂତ୍ର-ହାରା ନିୟନ୍ତ୍ରିତ, ତେଣୁ ବାଧ୍ୟ ହୋଇ ଆମର ବ୍ୟବହାର ମଧ୍ୟ ତାହାର

ଅନୁରୂପ ହେବ । ମଡର୍ଣ୍ଣିଜମ୍‌ର ମୂଳ ଭିତ୍ତି ଏବଂ ସତ୍ତା ଅନୁସାରେ ଆଚରିତ ।

ଶେଷରେ ଅପ୍ରତ୍ୟାଶିତ ସୁଯୋଗ ଆସିଲା । ସେ କହିଲେ, "ଆପଣଙ୍କୁ ବଡ଼ ଏକୁଟିଆ ଲାଗୁଥିବ, ସବୁବେଳେ ଖାଲି ପଢ଼ା ଆଉ ପରିଶ୍ରମ । ଆସୁନାହାନ୍ତି କାହିଁକି ଉପରଓଳି ଆମ ଘରକୁ ? ଆମେ ପଡ଼ୋଶୀ, ପୁଣି ଆପଣ ଆମ ରଘୁନାଥଙ୍କର ବନ୍ଧୁ । ଅତଏବ ଆମର ବି ବନ୍ଧୁ, ଆପଣ ତ ଆମ ଘରର ଲୋକ । 'ମନୀଷୀନାଂ ସାପ୍ତପଦୀନମୁଚ୍ୟତେ,' ଆମେ ଏତେଗୁଡ଼ାଏ କଥା ହେଲୁଣି ଆଉ ବାକି ରହିଲା କ'ଣ ?"

ଆମେ ଉଭୟେ ଖୁବ୍ ହସିଲୁଁ । ସେ ବିଦା ହେଲେ । ମୋ'ଠୁଁ ନିର୍ଭର ଜବାବ୍ ନେଇଗଲେ ଯେ ଉପରଓଳି ମୁଁ ଅବଶ୍ୟ ଯିବି ।

ଦିନଯାକ ରଘୁନାଥକୁ ଅପେକ୍ଷା କଲି, ସେ ଆସିଲା ନାହିଁ । ସେମାନେ କୋଠା ଉପରକୁ ଯିବାବେଳ ହେବାର ଅଧଘଣ୍ଟା ପୂର୍ବରୁ ମୁଁ ସଜ ହେଲି । ଏଡ଼େ ଚମକ ଲାଗିବାଭଳି କିଛି ହେଉ ନ ଥିଲା । କିନ୍ତୁ ଆଜି ମୋ'ର ପରିଷ୍କାର ମନେଅଛି, ସେଦିନ ମୋ'ର ଭିପଦରେ ହୋସ୍ ଆସିଥିଲା ଯେ ଧୋବା ଲୁଗାଗୁଡ଼ାକ ବହୁତ ଦିନ ହେଲା ନେଲାଣି, ଦେଇନାହିଁ । ଧୋବାଘରକୁ ଯାଇ ଖଣ୍ଡିଏ ଲୁଗା ଖଣ୍ଡିଏ କମିଜ୍ ଆଣିଥିଲି । ମୁଣ୍ଡବାଳ ମୋ'ର କୁଣ୍ଡା ହୁଏନାହିଁ, ସେଦିନ ଯଥାସମ୍ଭବ ବାଳଗୁଡ଼ାକୁ ଶାଉଁଳେଇଥିଲି ।

ନଳିନାକ୍ଷବାବୁ ଥିଲେ, ବଡ଼ ଆଦରରେ ବସେଇଲେ । କହିଲେ, "ମତେ ପର ବୋଲି ମନେ କରିବେ ନାହିଁ ରାଧେଶ୍ୟାମବାବୁ, ମୋ ଘର କିଏ, ଆପଣଙ୍କ ଘର କିଏ ?"

ଭିତର ପାଖର ଦରମେଲା କବାଟ, ସେପାଖୁ ଅବାଜ ହେଲା— "ପର ବୋଲି ତ ଭାବୁଛନ୍ତି । ନ ହେଲେ ଏତେଦିନ ହେଲା ଆମେ ଆସିଲୁଣି ଟିକିଏ ପଚାରିବାକୁ ଆସନ୍ତେ ନାହିଁ କିଏ ବୋଲି ?"

ନଳିନାକ୍ଷବାବୁ କହିଲେ, "କିହୋ ଭିତରକୁ ଆସୁନା, ତୁମର ପୁଅ ପରି, ତୁମେ ଲାଜକରି କରିଛଡ଼ା ଦେଉଛ, କହୁଛ କ'ଣ ନା ସେ ପର ବୋଲି ଭାବୁଛନ୍ତି ?"

ଲେଖାବୋଉ ଆସିଲେ । ମୁଣ୍ଡକୁ ଅଧବାଟଯାଏ ମାଡ଼ିଦେଇ ମୁଁ ଦଣ୍ଡବତ କଲି. ସେ କିଛି କହିଲେ ନାହିଁ । ଲୁଗାଚାନି ହସୁଥାନ୍ତି । କିଛି ସମୟ ରହି ସେ ଫେରିଗଲେ । ଥାଳିଆଟିକରେ ଜଳଖିଆ ଧରି ଛବି ଆସିଲା, ଧଳା ଶାଢ଼ୀ ଖଣ୍ଡିଏ ପିନ୍ଧିଥାଏ, ଦିଶୁଥାଏ ସୁନ୍ଦର । ସେ ଯାହା ପିନ୍ଧିବ ତାକୁ ମାନିବ । ତା' ବାପା ପଚାରିଲେ, "ନାମ କାହିଁ କଲେ ?" ଛବି କହିଲା, "ପଢ଼ୁଛି ।"

ଛବିର ସଙ୍କୋଚ ନାହିଁ । ମୋ ପାଖକୁ ଆସି ଟେବୁଲ୍ ଉପରେ ଜଳଖିଆ ଥୋଇଦେଇ ଛବି କହିଲା, "ଖାଉନ୍ତୁ ।" ବାପ ମା ଦୁହେଁ ହସିଲେ, କହିଲେ, "ଏମିତି ଟର୍ଚ୍ଛ କରିବୁ କି ଲୋ, ଭଦ୍ରଲୋକଙ୍କୁ କହୁଚୁ, ଖାଉନ୍ତୁ ?" ସେମାନେ ସମସ୍ତେ ହସିଲେ, ମତେ ଅସଜ ଲାଗିଲେ ବି ମୁଁ ହସୁଥାଏ ।

ଏହାପରେ ଆମର ପରିଚୟ ହେଲା । କିଛି ସମୟ ଗଲାରୁ ଲେଖା ବି ଆସି ମାଡ଼ମୁଡ଼ ହୋଇ ଗୋଟିଏ ଚୌକିରେ ବସିଲା । ନାନାପ୍ରକାର ଗପ ଜମିଲା । ଚା' ଖିଆ ହେଉଥାଏ । କ୍ରମେ କ୍ରମେ ଛବିର ଅଳ୍ପ ଅଳ୍ପ ସଙ୍କୋଚ ଖୋଲିଗଲା । ଲେଖା ଅଳ୍ପ କଥା କହେ । ଛବି ଉପରେ ପଡ଼ି କଥା କହେ, ହସାଏ ଓ ଖୋଞ୍ଚା ମାରେ । ଥରେ ଦି' ଥର ଛବି ଅନୁପସ୍ଥିତ ରବି ପ୍ରତି କଟାକ୍ଷ କରି ଦି' ଶ୍ଳେଟ ଥଟ୍ଟା ମାରିଥିଲା ।

ଛବି ଅନୁରୋଧ କଲା କିଛି ଗପ ବହି ଆଣିଦେବାକୁ । ମୁଁ ହଁ କଲି ।

ଏହାପରେ—ସବୁ ମାମୁଲି ଗତ ।

ମଣିଷ ଭାବେ ତା'ର ଅଭିଜ୍ଞତାଗୁଡ଼ାକ ସବୁ ନୂଆ, ତହିଁର ନୂଆ ଗୁଣ ସବୁ ତା'ର ଏକଚାଟିଆ । କିନ୍ତୁ ସବୁ କଥା ଫର୍ମାରେ ପଡ଼ିଯାଏ, ଗୁରେଇ ଭୁରେଇ ହୋଇ ଘଟଣାଗୁଡ଼ାକ ଘଟେ, ସେହି ଘୋରଚେଇ ପୋରଚେଇ ବନ୍ଧାଗତ ଅନୁସାରେ ।

ସେଦିନ ନୂଆ ଯମକ ଅନୁପ୍ରାସରେ ବୋଝେଇ ହୋଇ ମୁଁ ଘରକୁ ଫେରିଲି । ମୋ'ର ଆଖି ଆଗରେ ସେହି ଉଜ୍ଜ୍ୱଳ ମୂର୍ତ୍ତିଗୁଡ଼ିକ । ମନେ ମନେ ରବି ପ୍ରତି ମୋ'ର ଅନୁକମ୍ପା ହେଉଥାଏ । ବିଚରା ଲେଖାକୁ ବାହା ହେବ, ଛବିକୁ ନୁହେଁ । ଲେଖା ଆଉ ଛବି ଉଭୟେ ମୋ'ର ଭଉଣୀ

ହେଲେ, କିନ୍ତୁ ସାନ ଭଉଣୀ ପ୍ରତି ମୋ'ର ସ୍ନେହ ଅଧିକ । ମୁଁ ଭାବୁଥାଏଁ, କେଡ଼େ ଭଲ ଲୋକ ଏମାନେ, ଏମାନେ ଆମ ସମାଜର ଆଦର୍ଶ । ଅନ୍ଧ ପ୍ରାଚୀନ ସଂସ୍କାରର ଜବରଦସ୍ତି ବନ୍ଧନ ଏମାନଙ୍କ ସହଜ ସୁନ୍ଦରପଣିଆକୁ କଳଙ୍କିତ କରୁନାହିଁ । ଏଠି ଶିକ୍ଷା ଅଛି, ସଂଯମ ଅଛି, ସୁରୁଚି ଅଛି । ସବୁ ଆନନ୍ଦର ଉପାଦାନ ଅଛି । ମୋ'ର ପଢ଼ାବସ୍ଥାରୁ ଇଂରେଜ କବିଙ୍କର ନିବେଦନ ମନେପଡ଼ିଲା 'ସବୁ ଆନନ୍ଦ ଦେବାକୁ ମୋ'ର ଶକ୍ତି ନାହିଁ, ସବୁ ସକାଳୁ ଉଠି ଦଶଜଣଙ୍କ ଆଡ଼କୁ ହସ ହସ ମୂର୍ତ୍ତି ବୁଲେଇ ରଖିବାକୁ ମୋ'ର ମନର ପ୍ରବୃତ୍ତି ନାହିଁ, ତେବେ ହେ ଭଗବାନ୍ ମୋ'ର ମଳି ମନକୁ ପ୍ରତିକ୍ଷଣ ଅନୁଭୂତିର ନୂଆ ନୂଆ କେଞ୍ଚାରେ ଖେଞ୍ଚି ଖେଞ୍ଚି ତୁମେ ମତେ ଭଲ କରିନିଅ ।' ଏମାନେ ପ୍ରକୃତରେ ଆନନ୍ଦର ସନ୍ତାନ । ଉଦ୍ଧି ଭାଗ୍ୟବାନ୍ ହେବ ଅନ୍ତତଃ ଏତିକିରେ ଯେ, ଏ ଘର ସଙ୍ଗତ ତା'ର ବନ୍ଧୁପଣିଆ ହେବ ।

ମନେ ମନେ ମୋ'ର ଦାୟିତ୍ୱଜ୍ଞାନ ସଞ୍ଚରିଲା ଯେ ଏମାନଙ୍କୁ ମୁଁ କାୟମନୋବାକ୍ୟେ ସାହାଯ୍ୟ କରିବ । ଲେଖାର ବର ଠିକ୍ ହେଉପଛେ ଛବି ପାଇଁ ମୁଁ ବର ଠିକ୍ କରିପାରିବ । ମୋଠୁ ଯାହା ଗ୍ରହଣୀୟ ତା' ମୁଁ ଦେବ ।

ଆନନ୍ଦ ଆସିଛି ।

ଯେତେ ଥର ଆସେ, ତା'ର ପ୍ରକାର ସବୁ ନୂଆ ।

ସାମ୍ନାର ସେ କୋଠାଘର ପ୍ରତି ଆଉ ଅସ୍ୱାସ୍ଥ୍ୟ କୁତୂହଳ ଆସୁ ନ ଥିଲା । ସେ ଘରେ ଯେଉଁମାନେ ଅଛନ୍ତି, ସେମାନେ ମୋ'ର ନିତାନ୍ତ ଆପଣାର । ଯେତେଥର ମନ ହୁଏ ଯାଏଁ, ପ୍ରତ୍ୟହର ଚା' ମିଳେ, ଜଳଖିଆ ମିଳେ । ନଳିନାକ୍ଷବାବୁ ଓ ତାଙ୍କ ସ୍ତ୍ରୀଙ୍କ ପାଖରେ ଦୁଃଖସୁଖ ହୁଏ । ଛବି

ସଙ୍ଗରେ କଥାଭାଷା ହୁଏ, ବହିପତ୍ର ଦେଣନେଣ ଲାଗେ, ବେଳେ ବେଳେ ସେ ଓ ମୁଁ ପଢ଼ିଥିବା ବହିପତ୍ର ଚର୍ଚ୍ଚା ପଡ଼େ । ସେ ବଡ଼ ଆଗ୍ରହରେ ଶୁଣେ । ଲେଖା—ତା'ର ଭାଷା ସ୍ୱାମୀର ମୁଁ ବନ୍ଧୁ, ତା'ର ତ ଗମ୍ଭୀର ହେବାର କଥା । ସେ ବି ଆସେ, ଅଳ୍ପ କହେ, ସାଧାରଣ ଗଳ୍ପାପରିଚର ଆନନ୍ଦରେ ଭାଗ ନିଏ ।

ଗୋଟାଏ ସପ୍ତାହ ମୋଟେ । ରଘୁ ଆଜି ଆସିନାହାଁ, ସହରରେ ଥିଲାପରି ବି ଶୁଣୁନାହାଁ । ତା'ର କଥା ତାଙ୍କ ଘରେ ପ୍ରାୟ ପଡ଼େ, ସେମାନେ ତା'ର ଚିଠିକୁ ଅନେଇ ରହନ୍ତି ।

ଗୋଟିଏ ସପ୍ତାହର ଗଳ୍ପାପରିଚ । ଏତିକ ଅଳ୍ପ ସମୟ ଭିତରେ ମନ ଭିତରେ ଅନେକ ଗୁଡ଼ାଇ ମିଳେଇ ଯାଇଥାଏ । ନଗ୍ରେଜା ଥିଲାବେଳେ କାନ୍ଥର କଣାବାଟେ ସେ ଆରପଟ ବାଲିକୁ ଅନେଇ ଟଙ୍କ୍ ପ୍ରାକ୍ଟିସ କରିବା ଅଭ୍ୟାସ ମୁଁ ଛାଡ଼ି ଦେଇଥାଏଁ । ପୋଖରୀ ଉପରକୁ ଆଁ ଟାଏ ଜରି ଅନେଇଁ ରହିବାର ଅଭ୍ୟାସ ମଧ୍ୟ । ମୋ'ର ନିଜର ବିଷୟର କଥା ଆଦୌ ମନେ ନ ଥାଏ । ସ୍କୁଲଆଡ଼କୁ ଚିଠି ଦେବାର ମତଲବ ଗଡ଼ିଯାଇ ସବୁ ବଳେଇ ପଡ଼ି ଯାଇଥାଏ । ସବୁ ପଛର ଅନୁଭୂତି ଯେପରିକି ପୋଛିପାଛି ଯାଇଛି, ନୂଆ ଜୀବନ, ସାମନାରେ ନୂଆ ରାସ୍ତା, ଭବିଷ୍ୟତ ।

ଏଇ ସାତଦିନ ଭିତରେ କେତେ କେତେ ବନ୍ଧୁବାନ୍ଧବଙ୍କ ସାଙ୍ଗ-ସୁଖକୁ ମୁଁ ଛାଡ଼ି ସାରିଛି, ବେଳେ ବେଳେ ବାଟରେ ଦେଖାହେଲେ କେହି କେହି ଚେତେଇ ଦିଅନ୍ତି, କ'ଣ ଏପରି କାମ ଭିଡ଼ ପଡ଼ିଛି ମୋ'ର, ଯେ ଆଡ୍ଡା ଦେବାକୁ ଯିବା ସକାଶେ ବେଳ ଅଣ୍ଟୁ ନାହିଁ ? ଏଣ୍ଟତେଣ୍ଟ ଗୋଟାଏ ନା ଗୋଟାଏ ଜବାବ ଦେଇ ମୁଁ ପଳେଇଯାଏ ।

ମୁଁ, ମୋ'ର ଟିଉସନ୍, ମୋ'ର ସ୍କୁଲର ପାଇଁ ଦିନଗଣା, ଆଉ ଘର ।

ଆଜ ତାଙ୍କ ଘର—ଅବଶ୍ୟ ।

ସହରରେ ହାଣ୍ଡି ପରି ବଢ଼ିଲେ, ବିଶେଷତଃ ଏ ବୟସରେ, ମନକୁ ବୁଲେଇବାକୁ ଅନେକ ପ୍ରକାର ଜିନିଷ ମିଳେ । କେବଳ ଆଖି ଆଉ କାନ ଖୋଲି ରଖିଲେ ହେଲା । ନିଜେ ଅଙ୍ଗେ ନିଭେଇବା ଅନୁଭୂତି ଅପେକ୍ଷା ପର ଅଙ୍ଗେ ନିଭେଇଥିବା ଅନୁଭୂତିକୁ ଆପଣାର କରି ମନେ ମନେ ଆନନ୍ଦ ପାଇବାର ସୁବିଧା ଅନେକ ଆସେ । ଏଠି ପୋଖରୀକୂଳ ନାହିଁ, ବାରିଆଡ଼ର ବାଉଁଶବଣ କି ଆମ୍ବତୋଟା ନାହିଁ, କିନ୍ତୁ ଏଇ କୋଠା ଜଙ୍ଗଲରେ ଅନେକ ଘଟଣା ଆଖିରେ ପଡ଼େ, ଯାହା ଗାଁ ଗୋହିରିରେ ମିଳନ୍ତା ନାହିଁ ।

ଦୂର ଦୂର ହୋଇ ବିଓଟି କୋଠା । ତା'ର ଗମ୍ବୁଜ ଘରୁ ଗୋଟାଏ ପାଖରୁ ଆରପାଖକୁ ବେତାରବାର୍ତ୍ତା ଗ୍ଳଳିଛି । ନିୟମିତ ସମୟରେ ଗୋଟାକ ଉପରେ ଖବରକାଗଜ ଧରି ଯୁବକଟିଏ ବସେ, ମୁଣ୍ଡ କୁଣ୍ଡେଇବାକୁ ଆର କୋଠା ଉପରେ ତରୁଣୀଟିଏ ଚଢ଼େ । ସେପାଖେ ଖବରକାଗଜର ନାନାବିଧ ହଲହଲ ସଙ୍ଗେ ସଙ୍ଗେ ଏପାଖେ ମୁକୁଳା ବେଣୀର ହିଲ୍ଲୋଳ ଛୁଟେ, ଦେଖାଶୁଣା ହୁଏ ମନେ ମନେ ।

ରଘୁବାବୁଙ୍କ ମେସ୍—ଠିକ୍ ସମୟ ହେଲେ ବିଲେଇଟିଏ ଆସେ, ଠିକ୍ ସମୟ ହେଲେ ବିଲେଇଟି ସେପାଖକୁ ଯାଏ । ବିଲେଇ ବେକରେ ସାନ ଡବାଟିଏ ବନ୍ଧା ହୋଇଥାଏ, ଯେ ଦେଖିବ କହିବ, କେଉଁ ପିଲା ଖେଳିବାକୁ ବାନ୍ଧିଦେଇଛି । ସେହି ସାନ ଡବାଟିରେ ପାନ ଖଠିଟିଏ ପଶିପାରେ । ବଳିଲଥିବା ଦୁଇଟି ପ୍ରାଣର କି ନୀରବ ଦେନାଦେନ ତାହାରି ଭିତରେ ।

ସେଦିନ ରାମପ୍ରସାଦବାବୁ ସାଙ୍ଗରେ ଥିଲେ । ଚୂନଗୋଦାମ ପାଖ କୋଠାତଳେ ଅନ୍ଧାରରେ ନୟନଜୋଳ ପାଖେ ଏକ କଣ ବସିଥିଲୁ । କ'ଣ ଗୋଟାଏ ପୋକ, ଯେତେ ତଡ଼ିଲେ ବି ବାରମ୍ବାର ହଟିଯାଇ ନାକରେ ବାଜୁଥାଏ । ଆଲୁଅ ପକେଇ ଦେଖିଲି, ପୋକ ନୁହେଁ, ଖଣ୍ଡେ ଚିଠି, ଦୋମହଲାର ଝରକାରୁ ସରୁ ସୂତାରେ ବନ୍ଧାହୋଇ ଓହଳିଛି ।

ଖୋଲି ଦେଖିଲି, ରାମପ୍ରସାଦବାବୁ ଆଜ ମୁଁ । ଚଠି ଖଣ୍ଡେ—"ସମସ୍ତେ ନାଇଟ୍‌ଶୋକୁ ବାଇସ୍କୋପ ଦେଖିବାକୁ ଯିବେ, ତା'ପରେ ଭଜନଘଣ୍ଟା—।"

ଉଦ୍ଭିଦଜଗତରେ ପାଣି, ପବନ, ପକ୍ଷୀ ଓ ପତଙ୍ଗମାନେ ଫୁଲରାଣୀ ଓ ଫୁଲରାଜାଙ୍କ ଭିତରେ ଦୌତ୍ୟକାର୍ଯ୍ୟ କରନ୍ତି । ମଣିଷ ଓ ଉଦ୍ଭିଦ ଭିତରେ ସାମଞ୍ଜସ୍ୟ ବହୁତ, ତେଣୁ ଆମ ସହରରେ ନାନା ଉପାୟରେ ଭାବ ଅଭିବ୍ୟକ୍ତ ହୁଏ, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ବେଳବୁଡ଼େ ଦେଖି ଦେଖି, ଶୁଣି ଶୁଣି, ବୁଲି ବାହାରିଲେ ଅନେକ କଥା ଜଣାପଡ଼େ ।

କିନ୍ତୁ ଏଇ ସାତ ଦିନ ସେସବୁ କଥାକୁ ମୋ'ର ଖିଆଲ ନ ଥିଲା । ନିଜେ ବୁଝିପାରି ମୋ'ର ପୁରୁଣା ଧରଣ ଧାରଣାଠୁଁ ମୁଁ ଦଉଡ଼ି କାଟି ଖସି ଚାଲିଗଲି । ପୁରୁଣା ବାଟଚଲା ରାସ୍ତା ଫାଁଗାଳିଆ ଦେଇ ପଡ଼ି ରହିଲା । ସେଠି ଭିକାରୀ ଭିକ ମାଗେ, ସେଠି ଗରିବର ଧୋକଡ଼ିରୁ ଫଡ଼ା ଫଡ଼ା ହୋଇ ତରକାରୀ ଛିଣ୍ଡେ, ସେଠି ବଡ଼ ଲୋକର ମଟର ଚକର ଚାପରେ ପିଚକାରୀ ପରି ନାଳପାଣି ଛିଟିକି ପଡ଼େ, ଏକବସ୍ତ୍ର ଦରିଦ୍ରର କାମିଜ୍ ନଷ୍ଟ କରିବାକୁ । ରାସ୍ତା । ସେଠି କୁକୁର, ସେଠି ଖେଙ୍କାଳ ମଣିଷ ।

ନିତିଦିନିଆ ଦୁନିଆରେ ପ୍ରୟୋଜନ ଅନେକ । ସମସ୍ୟା ବହୁତ, କୌଣସି ସମାଧାନ କୌଣସି ନିଷ୍ପତ୍ତି ଶେଷ ନୁହେଁ କି ସ୍ଥିର ନୁହେଁ, କୌଣସି ସମସ୍ୟା ବୁଝାସୁଝା କରିବା ଲୋକ ଅଭାବ ନାହାନ୍ତି । କିନ୍ତୁ ତେଣିକି ମୋ'ର ଦୃଷ୍ଟି ନ ଥିଲା । ଯହିଁକି ଦୃଷ୍ଟି ଥିଲା ସେ ବି ସମସ୍ୟା । ସେଥିରେ ବି ଭାବିବାକୁ ବୁଝିବାକୁ ଅନେକ ଅଛି ।

ଜୀବନ—ସେ ଅତି ଉଦାସ, ଅତି ଅମନୋଯୋଗୀ—କାହାର ସମସ୍ୟାରେ ତା'ର କିଛି ଯାଏ ଆସେ ନାହିଁ । ମଣିଷର ସବୁ ହାତ ଗୋଡ଼ ଛଟାଛଟିକୁ ତା'ର ଗୋଟାଏ ଚିରନ୍ତନ ବିକୃତ ହସ ।

ସାତ ଦିନ ଗଲା । ଆହୁରି ଦିନ ଗଡ଼ି ଚାଲିଲା । ଦିନୁଦିନ ଘନିଷ୍ଠତା ଆମର ବଢ଼ିଗଲା । ପନ୍ଦର ମିନଟ୍‌ରୁ ଆରମ୍ଭ କରି କ୍ରମେ କ୍ରମେ ଅଧଘଣ୍ଟାଏ ପର୍ଯ୍ୟନ୍ତ ତାଙ୍କ ଘରେ କଟେ । ଛବିର ମୋ'ର ବେଶି କଥାଭାଷା ହେଉଁ, ଲେଖା ଛାଡ଼ି ବସି ଶୁଣେ, ବେଳେ ବେଳେ କଥାରେ ଯୋଗଦିଏ । ନଳିନାକ୍ଷବାବୁ ବା ତାଙ୍କର ସ୍ତ୍ରୀ ସବୁବେଳେ ଆମ ପାଖେ ବସିରହି ପାରନ୍ତି ନାହିଁ, ନଳିନାକ୍ଷବାବୁ ତାଙ୍କର ଫାଇଲରେ ନିଘା ଦିଅନ୍ତି, ତାଙ୍କର

ସ୍ତ୍ରୀ ଘରକାମରେ ବ୍ୟସ୍ତ ଥାଆନ୍ତି । କଏ କେତେବେଳେ ଅନୁଚ୍ଛୁତ ଆସି ଆମର ଗପରେ ଯୋଗ ଦଅନ୍ତି । ସେଥିପ୍ରତି ଆମର ଭ୍ରୂକ୍ଷେପ ନ ଥାଏ ।

ଛବି—ସେ ଛବିଟିଏ ସତେ !

ବାର୍ଦ୍ଧକ୍ୟର ପରଳପଡ଼ା ଆଖିରେ ଆଜି ଯେ ଦିଶେ ଛବି ପରି ସୁନ୍ଦର, ପବନ ପରି ଉଦ୍ଦାମ, ଲତା ପରି ଲୀଳାୟିତ । ସୌନ୍ଦର୍ଯ୍ୟ ଆଜି ପ୍ରାଣବନ୍ତ ଖାଦ୍ୟବସ୍ତୁ ନୁହେଁ, ଯେ ଆଲୁଅ ପରି, ଯେ ତା'ର ପରିସର ଭିତରେ ଆସିବ, ତା' ଉପରେ ଆଲୁଅ ପଡ଼ିବ । ଆଲୁଅରେ ସେ ନୂଆ ନୂଆ ପଦାର୍ଥ ଦେଖିପାରିବ । ସେହିପରି ଥିଲି ଛବି ଆଲୁଅର ଝରଣା ।

ତା' ପାଖେ ଗଳ୍ପ ପାଇଁ ବିଶିଷ୍ଟ ସଭାର ଆବଶ୍ୟକ ନ ଥିଲା । ତା'ର ସମ୍ପର୍କରେ ଆପେ ଆପେ ବିଷୟବସ୍ତୁ ମନେପଡ଼େ, ଗଳ୍ପ-ଯୋଜନା ଗଢ଼ା ହୁଏ । ଛବି କଥା କହେ, କଥା ଶୁଣେ, ହସେ, ହସାଏ । ଛବି ପାଇଁ କାମ କରିବାକୁ ଭଲ ଲାଗେ, ସେ ନାନାପ୍ରକାର ଫର୍ମାସି ଦିଏ, ତା'ର ସବୁକଥା ହୁକୁମ୍ । ଫାଳ ଫାଳ ଆଖି ଉପରେ ଧନୁ ପରି ଭ୍ରୂଲତାର ଶର, କନ୍ତୁ ଭ୍ରୂଲତାର ଦଣ୍ଡ ଉଞ୍ଚ ଉଞ୍ଚ । ମୁକ୍ତ ଶିବୁକର ଦାଢ଼ ଧାରୁଆ ଆଜି ପରନ୍ତୁ ଛବିର ଅନୁରୋଧ ବି ହୁକୁମ୍ ।

ମନେଅଛି, ସେଇ ବରଷା ପାଗରେ ତା' ପାଇଁ ଗପ ବହି ଖୋଜିବାକୁ ବାରଦୁଆର ବୁଲି ମୁଁ କେତେ ନେହୁରା ହୋଇଛି । ତା'ର ଉଲ୍ କିଣିବାକୁ, ଜୋତା ବାଛିବାକୁ କେତେ ଦୋକାନ ହୋଇଛି । ସାମାନ୍ୟ ସାମାନ୍ୟ ଭେଟି, ସୌଖୀନ ପେନ୍‌ସିଲ୍‌ଟିଏ, ଛୁରି ଖଣ୍ଡେ ବାଛିବାକୁ କେତେ ପରିଶ୍ରମ କରିଛି । ସବୁ ପରିଶ୍ରମରେ ଆନନ୍ଦ ଲାଗେ, ଯେତେ ବାଛି ବାଛି ବୁଲିଲେ ବି ମନହୁଏ ଆହୁରି ବାଛିବାକୁ ।

ମାସେ ପରେ ଲାଗୁଥାଏ, ଏମାନଙ୍କୁ ଆଜନ୍ମ ମୁଁ ଚିହ୍ନିଛି । କଳନାଥ ବାବୁଙ୍କ ସ୍ତ୍ରୀ ବାରମ୍ବାର ରଘୁ କଥା ପଚାରନ୍ତି । କ'ଣ ହେଲା ? କାହିଁକି ଏପର୍ଯ୍ୟନ୍ତ ସେ ଉତ୍ତର ଦେଇ ନାହାନ୍ତି ? ଇତ୍ୟାଦି । ଛବି ପାଇଁ ପରିତାପ କରନ୍ତି । ଏଡ଼େ ଅଳଅଳ ହୋଇ ବଢ଼ିଛନ୍ତି, ପୁଅ ତ ନାହିଁ, ଏଇମାନେ ପୁଅ ଝିଅ ସବୁ । କୋଉଠି ବାଧାଟା ତା' ପାଇଁ ରଖିଥିବ···ଏହିପରି ।

ରଘୁ ଉତ୍ତର ଦେଲା ନାହିଁ । ଦିନେ ଖବର ଆସିଲା, ନବଘନ-ବାବୁ ଉପୋଟିଙ୍କ ଝିଅକୁ ରଘୁ ବିବାହେବା ଠିକ୍ ହୋଇଗଲା । ନବଘ

ସରିଯାଇଛନ୍ତି । ସେହିଦିନ ନଳିନାକ୍ଷବାବୁ ମଧ୍ୟ ତାଙ୍କର କେଉଁ ବନ୍ଧୁ ଜରିଆରେ ଖବର ପାଇଥାନ୍ତି । ସଞ୍ଜବୁଡ଼େ ମତେ ଦେଖି କହିଲେ—"ତା' ହେଲେ ଆପଣଙ୍କ ରଘୁନାଥବାବୁ ଅନ୍ୟତ୍ର ବାହାହେବା ଠିକ୍ ହୋଇଗଲା, ନା କ'ଣ ?"

ମୁଁ କହିଲି, "ମୁଁ ଜାଣେ ନାହିଁ । ରଘୁ ମତେ କିଛି ଲେଖେ ନାହିଁ କି ରଘୁକୁ ସେହିଦିନୁ ମୁଁ ଦେଖିନାହିଁ ।"

ନଳିନାକ୍ଷବାବୁ ଟିକିଏ ମୁହଁ ଶୁଖେଇଲେ । ପାଖରେ ଘରର ସମସ୍ତେ ଥାଆନ୍ତି । ତାଙ୍କ ସ୍ତ୍ରୀ ଉଠି ଚାଲିଗଲେ, ଲେଖା ଉଠି ଚାଲିଗଲା । ଛବି ଟିକିଏ ନମ୍ର ହୋଇ କରୁଣଭାବେ ମୋତେ ଅନେଇଲା । କହିଲା—"ଚାହା ଆଣିବି ?" ମୁଁ ବାଁରେଇ ଦେଇ କହିଲି—"ନା, ଦେହ ଭଲ ନାହିଁ ଆଜି, ଥାଉ । ନଳିନାକ୍ଷବାବୁ ହସିଲେ, କହିଲେ, "ଆଣ୍ ଲୋ ମା, ଚା ଟିକିଏ ଖାଇବେ ନାହିଁ ?"

ଛବି ମୁହଁ ବଙ୍କେଇ ଦେଇ ଖତେଇ ହୋଇ କହିଲା, "ହୁଁ, ଖାଇବେ ନାହିଁ ନା ?" ହଠାତ୍ ଖୁସି ହେଲାପରି ନାଚିଲା ପରି ସେ ଚାଲିଗଲା । ମୁହୂର୍ତ୍ତକର ମନ ଭିତରର ତୋଫାନ, ବାହାରର ସନ୍ଧସ୍ଥଳ । ସେ ନିଷ୍ପତ୍ତି କରି ପାରିଥିଲା, ସେ ଜିତିଥିଲା ।

ହତାଶ ହୋଇ ପାପୁଲି ଉପରେ ଗାଲ ଭରା ଦେଇ ଚାହାରି ଆଡ଼କୁ ଅନେଇଁ ଅନେଇଁ ମୁଁ ଦୀର୍ଘଶ୍ୱାସ ପକାଇଲି । ନଳିନାକ୍ଷବାବୁ ଅନବରତ ବକ୍ତୃତା ଆରମ୍ଭ କଲେ—

"ଆମେ ଗରିବ, ରଘୁନାଥବାବୁ ବଡ଼ଲୋକ, ସେ ଉପଯୁକ୍ତ ସମ୍ବନ୍ଧ କଲେ । ମୋ'ର ସେଥିକି କହିବାକୁ କିଛି ନାହିଁ ଯେ ରାଧେଶ୍ୟାମବାବୁ ! ମୁଁ ଦୁଃଖିତ ହେଉଛି, ଏଇଆ ଭାବି ଯେ, ଆମ ଦେଶର ଆଶାଭରସା, ଯେଉଁମାନେ ଶିକ୍ଷିତ ଯୁବକ, ଦେଶର ସ୍ରଷ୍ଟା ଯେଉଁମାନେ, ତାଙ୍କର ବାହାର ସେତେ ସଳଖ ନୁହେଁ କି କ୍ଷିପ୍ର ନୁହେଁ । ଏୟା ବି କୁହାଯାଇପାରେ ଯେ, ତାଙ୍କର ବାହାନ କରିବାର ଶକ୍ତି ଆଦୌ ନାହିଁ । ନା କ'ଣ କହୁଛନ୍ତି ? ଦୋଷ କାହାକୁ ଦେବା ରାଧେଶ୍ୟାମବାବୁ ? ଦେଶର ଅବସ୍ଥା ସେହିପରି । ପରାଧୀନତା ଆମର ଏତେ ଭିତରକୁ ବୋଳି ହେଉଛି ଯେ, ଆମେ ଧରି ନେଇଛୁ, ଆମେ ଅବସ୍ଥାର ଦାସ, ଘସୁ ଘସୁ ଯେଉଁଠି ଯାଇ ଲାଗିବା,

ନିଜେ ଜଗ ନିର୍ଣ୍ଣିତ କରିବା ସକାଶେ ହାତ ହଲେଇ ଆମେ ଆହ୍ୱାନ ମାରିବା ନାହିଁ । ଦୋଷ ପାଇଁ ସେଠି, ବର୍ଣ୍ଣନା କରିବାକୁ ଆମର ଯୁବକମାନେ ଶିଖି ନାହାନ୍ତି, କାରଣ ଆମର ଭାଗ୍ୟବାଦୀ ଦେଶ । ହେଇ ଦେଖନ୍ତୁ ବନିତରେ ଆମେରିକାରେ—”

ନଳିନାକ୍ଷବାବୁ ଦୀର୍ଘ ବକ୍ତୃତାଟିଏ ଦେଲେ । ବକ୍ତୃତାର ବେଷ୍ଟନୀ ଅଷ୍ଟ୍ରେଲିଆଠୁ ଉତ୍ତର ମେରୁ ଅଞ୍ଚଳ ପର୍ଯ୍ୟନ୍ତ ରେଖାଙ୍କିତ ହୋଇ ଆସିଲା । କ୍ଲାସରେ ଅଧ୍ୟାପକଙ୍କ ଭାଷଣ ଶୁଣିଲାବେଳେ ଅନେକ ସମୟରେ ମନ ଲାଗେ ନାହିଁ, ପାଦହାଏ ଚଟାଣରୁ ଓ ଆଙ୍ଗୁଠିହାଏ ଡେସ୍କରୁ ସ୍ୱର ବାହାର କରି ସମତା ରଖାଯାଏ । କିନ୍ତୁ ନଳିନାକ୍ଷବାବୁଙ୍କ ବକ୍ତୃତାକୁ ମୁଁ ମୁଣ୍ଡ ନୁଆଇଁ, ପାଟି ଅଳ୍ପ ଆଁ କରି, ଆଖି ସ୍ଥିର ରଖି ଶୁଣିଗଲି, ଗିଳିଗଲି ।

ସେ ଛବିର ବାପା । ଲେଖାର ମଧ୍ୟ । କେତେବେଳକେ ମହନ-ଭୋଗଥାଳିଆଏ ନେଇ ଛବି ଆସିଲା । ନଳିନାକ୍ଷବାବୁ କ୍ଳାନ୍ତ ହୋଇଥିଲେ, ପଦାକୁ ଗଲେ, କହିଲେ, “ଆପଣ କିଛି ଭାବନ୍ତୁ ନାହିଁ ।” ‘ଆପଣ’ ଉପରେ ଜୋର୍ ଦେଇଗଲେ ।

କେହି ନ ଥିଲେ । ଛବି ମୋ’ର ମୁହଁକୁ ଅନେଇଲା, ପିଲାଳିଆ ଦୁଷ୍ଟ ହସ ହସି ମୋ ପାଖେ ଠିଆହୋଇ କହିଲା, “ସବୁଯାକ ଖାଇବାକୁ ହବ । ମୁଁ ନିଜେ କରିଛି ଜାଣନ୍ତି ?”

ମହନଭୋଗକୁ ଅନେଇ ଦେଖିଲି । ତା’ ଉପରେ ଗୋଟିଏ ହାତ ପାପୁଲିର ଛାପା ଥିଲା । ଧୀରେ ଧୀରେ ଆପଣା ହାତରେ ତାକୁ ପାଉଁଳି ବସିଲି । ଛବି ପାଟିକରି କହିଲା—“ବାଃ,” ସେ ଭାରି ହସୁଥାଏ । ଧାଇଁ ଧାଇଁ ବାହାରି ଯାଉ ଯାଉ ସେ କହିଲା—“ବସି ବସି ସବୁଯାକ ଖାଉନ୍ତୁ ।”

“ମୁଁ ଯୁଝା ଆଣେଁ—”

ମନେଅଛି, ବାହାରେ ଝିପିରି ଝିପିରି ମେଘ ଛୁଞ୍ଚୁଥାଏ, ଘରେ ମୁଁ ଏକୁଟିଆ । ଗୋଟିଏ ନିଲ୍‌ଟଣ ଜଳୁଥାଏ । ଟେବୁଲ ଉପରେ ସେମାନଙ୍କର ଅଗଡ଼ମ୍ ବଗଡ଼ମ୍ ବହି, ଗୋଟିଏ ନିଣ୍ଡବା, ସେଥିରେ ଛବିର କାନ୍ଥରେ ଖଣ୍ଡିଏ ଫଟୋ, ଛବିର ଓ ଲେଖାର ପିଲାଦିନର ।

ଆରପାଖେ କାନ୍ଥର ଜନାବାଟେ ପଦାରୁ ଗୋଟିଏ ପୋଟଳ-ଲଟା ଘର ଭିତରକୁ ହାତ ବଢ଼େଇ ଥାଏ ।

ଶେଷ ଛବିଟିର ପ୍ରତ୍ୟେକ ଟିକି ଟିକି ଅଂଶ ମନରେ ଅଟକି ରହିଯାଏ, ମନ ଏକ୍‌ସପୋଜର୍ ନଏ, କୌଣସିଟିକୁ ଛାଡ଼ିପାରେ ନାହିଁ ଯେକୌଣସି ଅଂଶ, ଏପରିକି ଆଲୁଅର ଧାର କେତେ, ବେକ କେତେ— କୌଣସିଟିକୁ ଛାଡ଼ି ହୋଇଗଲେ ଅନୁଭୂତିକୁ ଜାଆଇ ହୁଅନ୍ତା ନାହିଁ । ଯେତେବେଳେ ଅନୁଭୂତି ନିଜେ ନିଜକୁ ଜାଆଏ, ଛବିର ସମୁଦାୟ ଭାବରେ ଜଳଜଳ ହିସେ, ସବୁ ଆସେ ଆସେ, ଚଳନ୍ତି ଛବି ଭିତରେ ଶେଷ ଛବି ମଧ୍ୟ ଆଗରୁ ଥାଏ, ଶେଷ ସରିଲା ପରେ ଆଙ୍ଗୁଠି ରଖିଲାଯାଏ ସେଇ ଛବିକୁ ।

ମଣିଷ କହେ, "ଏଇଟା ଶେଷର ଛବି, ଏତିକି ସମ୍ବଳ ।"

ଶ୍ରୀଙ୍କ ଭାବି ଠିକଣା କଲି, ଆଜି ତାଙ୍କ ଘରକୁ ଯିବି ନାହିଁ ।

ରଘୁ ସେଠି ବସିହେବ, ତା'ର ବନ୍ଧୁ ବୋଲି ସେଠି ବୋଧହୁଏ ଏତେ ସ୍ନେହ ଆଦର ପାଉଥିଲି । ପରକୁ ଆପଣାର କରିହୋଇଥିଲି କେବଳ ରଘୁ ପାଇଁ । ରଘୁ ମତେ ଖାଲି ଧରେଇ ଦେଇ ଛୁ'କଲା । ଅତଏବ ମୋର ସମ୍ବନ୍ଧଟା ରହିବାକୁ ସେଠୁ ଛିଣ୍ଡିଗଲା । ଗଲେ ଗଲା, ଆଜି କାହିଁକି ?

ସେମାନେ କେତେ ଆଶାକରି ବସିଥିଲେ, ରଘୁ କନିଆଁ ଦେଖିବ, ଗଲା, ଠକିଲା । ରଘୁ ଉପରେ ରାଗି ଦୁନିଆ ଉପରେ ଚିଡ଼ି ମୁଁ ବାଧ୍ୟକରି ଯିବା ବନ୍ଦ କଲି । ପରୀକ୍ଷା ସବୁ ପାଖହୋଇ ଆସିବାରୁ ସନ୍ଧିଓଳି ମଧ୍ୟ ଟିଉସନ୍ଟିଏ ମିଳିଗଲା, କାମ ବେଶି । ଟାଣିଓଟାରି ତାଙ୍କ ଘରଠୁଁ ମୁଁ ନିଜ ଗୁଁଙ୍କୁ ଗୁଁଏ ପାଖେଇ ପାଖେଇ ରଖିଲି । ଘରେ ଥିଲାବେଳେ ପଦାକୁ ବାହାରେ ନାହିଁ, ଭାରି ଖରାପ ଲାଗୁଥାଏ । ଦିନ ତିନିଟା ଲାଗିଲା ଗୋଟାଏ ଯୁଗ ପରି ।

ତା'ପରେ ହଦନେ, ବୁଲଗୁଲ ଗ୍ଭଇ ଲେଉଟାବେଳେ ବସାକୁ ଫେଣ୍ଟ୍ରିଛୁ, ଦେଖିଲ କୋଠା ଉପରେ ସେମାନେ ଦୁଇଜଣ । ଛବ ମତେ ନଘାକର ସାଇଥିଲ, ଲେଖାକୁ ଆଙ୍ଗୁଠି ଦେଖେଇ ମୁହଁରେ ଲୁଗାମାଡ଼ି ହସିଲ । କୁଆଡ଼କୁ ଖିଆଲ୍ ନ କର ବାରମ୍ବାର ହାତ ହଲେଇ ହଲେଇ ମତେ ଡାକାଲ, ତଳକୁ ଯିବାରୁ ଖାଲ ଏତକ କହିଲ—"ଆସିବେ ।"

ସଞ୍ଜ ବୁଡ଼ଲ, ଛକପକ ଲଗୁଥାଏ । ଘରକୁ ହେବାକୁ ମନ ହେଉଥାଏ କାହିଁକି ସେ ଡାକଲ, ମୋ'ର ସ୍ତ୍ରୀ ଅପେକ୍ଷା କର ବସିଥିବ, ତା'ର ପରୀକ୍ଷା ପାଖ ହେଲ । ମୋର କର୍ତ୍ତବ୍ୟ ଅଛି, ମୁଁ କାମିକା ମଣିଷ, ପରଘରେ ଗପ କରିବାକୁ ମତେ ସମୟ କାହିଁ ? ଭାବ ଭାବ ଦୃଢ଼ ନିଷ୍ପତ୍ତି କଲ, ମୁଁ ଯିବ ନାହିଁ । ଛବ ମୁହଁ ଶୁଖେଇପାରେ, ରାଗିପାରେ ।

ଛବ ମୋ'ର କଏ ?

ମୁଁ ତାକୁ ଖାତର କରେ ଥୋଡ଼ା !

ସଞ୍ଜବଣ୍ଟା ଲଗିଲ, ସେପାଖେ ଘଣ୍ଟି ଠୁଣ୍ଠୁଣ୍ ହେଲ, ଅନ୍ୟମନସ୍କ-ଭାବେ ସେ ଘରକୁ ବାହାରିଲ । ଦୁର୍ବଳ ଲଗୁଥାଏ ।

ଛବ କହିଲ, "ଠାକୁରଙ୍କୁ ଜଣାଉଥିଲ, ରାଧେଶ୍ୟାମବାବୁ ଆସିଲେ ନାହିଁ କାହିଁକେ, ନାହିଁ ଲେ ନାନ ? ହେଇ ଦେଖ୍, ରାଧେଶ୍ୟାମବାବୁ କେମିତ ଗ୍ଭଲ ଆସିଲେ ।"

ନଳନାକ୍ଷବାବୁ ହସିଲେ, କହିଲେ, "ଆପଣଙ୍କ ପାଖକୁ ଯିବ ଯିବ ହଉଥିଲ, ରାଧେଶ୍ୟାମବାବୁ କୁଆଡ଼େ ଥିଲେ ଏତେଦନଧାକେ ? ଆଚ୍ଛା, କଲେଜରୁ ଏଇ ବର୍ଷ ବି. ଏ. ପାସ୍ କଲେ ଯେଉଁ କଣୋରମୋହନ ମିଶ୍ର, ବୃତ୍ତିରେ ଅନର୍ସ ପାଇଛନ୍ତି, ଆପଣ ତାଙ୍କୁ ଚହ୍ନନ୍ତି ?"

ଲେଖା ଗ୍ଭଲଗଲ ଛବ ରହିଲ । ନଳନାକ୍ଷବାବୁ କହିଲେ ଲେଖାପାଇଁ କଶୋରମୋହନବାବୁଙ୍କ ବିଷୟରେ ଟିକଏ ବୁଝାସୁଝା କରିବାକୁ । ନଳନାକ୍ଷବାବୁ ପଦାକୁ ଗଲେ । ଖଣ୍ଡିକାଶ ଶୁଭୁଥାଏ ।

ଛବ କହିଲ—"ଆପଣ ମନେ ମନେ କ'ଣ ଭାବୁଛନ୍ତି, କହିବେ ନାହିଁ ? କ'ଣ ? କ'ଣ ? କହନ୍ତୁ ।"

ମୁଁ କହିଲ, "କାହିଁ ନାହିଁ ତ । ସେ ଜଦ୍ ଧରିଥାଏ, ତା'ର ଆଖି ଯୋଡ଼କ ଅସ୍ୱାଭାବକ ଉଜ୍ଜ୍ୱଳ ଦିଶୁଥାଏ । ଟୋଟାଏ ମୁନହଙ୍ଗା ପେନ୍‌ସିଲ୍

ଧରି ସେ ଟେବୁଲ ଉପରେ ଏଣ୍ଡଟେଣ୍ଡ ଗାରେଉଥାଏ । ତା'ର ଆଙ୍ଗୁଠି ମୋ ହାତରେ ବାଜିଲା । ଧୀରେ ଧୀରେ ତା'ର ପାପୁଲି ଘାଉଁଳିଲି । ଘୁଣ୍ଟ ଭିତରେ ଟିକିଏ ପାହାର ପଡ଼ୁଥାଏ, କାନମୁଣ୍ଡା ଗରମ ଲାଗୁଥାଏ ।

ଭୂମିତାନ ତା'ର ପାପୁଲି ଉପରେ ମୋ'ର ଆଉଁସା ସେ ସହିଲା ।" କହିଲା, "ଆପଣ ହାତ ଦେଖି ଜାଣନ୍ତି କି ?"

ମୁଁ କହିଲି, "ହଁ ।"

ତା'ର ପାପୁଲି ମୋ'ର ମୁହଁ ପାଖକୁ ରଖି ଟେବୁଲ ଉପରେ ମୁଣ୍ଡ ଦେଇ ମୋ'ର ଆଙ୍ଗୁଠି ପାଖକୁ ସେ ନଇଁ ପଡ଼ିଲା । କିଛି ସମୟ ଭୂମିତାନ କଟିଲା । ସେ ମୁଣ୍ଡ ଟେକିଲା, ମୁହଁଗୋଟାକ ରଙ୍ଗ ପଡ଼ଯାଇଥାଏ, କପାଳ ଉପରେ ବୁନ୍ଦା ବୁନ୍ଦା ଝାଳ । ଦୃଷ୍ଟି ତଳକୁ କରି ବିକୃତ ଗଳାରେ ଧୀରେ ଧୀରେ ସେ କହିଲା—

"କହିଲେ ନାହିଁ, ମୋ'ର କପାଳରେ କ'ଣ ଅଛି, ଭଲ କି ମନ୍ଦ ?"

ତା'ର ସ୍ୱର କମ୍ପୁଥାଏ, ଖସ୍ ଖସ୍ ଶୁଭିଲା । ଦେଖିଲି ଲେଖା ଘର ଭିତରକୁ ଆସୁଛି । ଛବି କହିଲା, "ନାନି, ତୁ ବସି ଗପ କର, ମୋ'ର ମୁଣ୍ଡ ବଥାଉଛି, ମୁଁ ଯାଏଁ ।"

ଛବି ଚାଲିଗଲା । କିଛି ସମୟ ଲେଖାର ମୁହଁକୁ ଅନେଇଁ ପାରିଲି ନାହିଁ । ଲେଖା ଅନାୟାସରେ ପଚାରିଲା, "ଏତେଗୁଡ଼ାଏ ଦିନ ହେଲାଣି କାହିଁକି ଆପଣ ଏଣେ ଆସନ୍ତି ନାହିଁ ?"

ହସି ହସି କହିଲି, "ଘର କାମ ଭିଡ଼ ନା, ତେଣୁ···। ଆସିଥିଲି ତ ସେଦିନ ।"

ମୋ'ର ହସ ଫେରସ୍ତ ଦେଇ ଲେଖା କହିଲା, "ଆପଣ ଆସିଲେ ନାହିଁ, ତେଣୁ କୋଠା ଉପରୁ ଆପଣଙ୍କୁ ଡାକିବାକୁ ବାଧ୍ୟ ହେଲି । ଆପଣ ଆସୁଥିଲେ, ନ ଆସିଲେ କାହିଁକି ?" ତା'ର ପଚାରିବାର ଢାଙ୍ଗ ବଡ଼ ସହଜ ଜଣାପଡ଼େ, କିନ୍ତୁ ଜବାବରେ ଧରା ନ ଦେବାକୁ ଛଟପଟ ଲାଗେ । "ଘରେ ଟେଗପ ଲାଗେ ଏକୁଟିଆଟା—"

ଦୁଆରମୁହଁରୁ ଶବ୍ଦ ହେଲା, "ହୁ ତୁ ସ୍ତାଡ଼ୁକୁ ଆ, ଯା' ପାନ ଆଣିବୁ ।" ଲେଖା ଗଲା । ପୁଣି ଶବ୍ଦ ହେଲା—"ଲେଖା ପାଇଁ କୋଉଠି ଗୋଟିଏ ବର ଠିକଣା କରନ୍ତୁ । ଆଜକାଲିକା ଟୋକାଙ୍କ ସାଙ୍ଗରେ ଆପଣଙ୍କର ବେଶି ଚିହ୍ନା ଥିବ । ଟିକିଏ ମନଦେଇ ଖୋଜିବେ, ଭୁଲିବେ ନାହିଁ । ପାଠ ଦି' ଅକ୍ଷର ପଢ଼ିଥିବ, ଭଲ ପିଲା ହୋଇଥିବ, ଘରେ ଗଣ୍ଡିଏ ଖାଇବାକୁ ଥିବ, ଏତିକ ହେଲେ ଆମର ହେଲା, ଆଉ ଅଧିକା କ'ଣ ହବ ?

ସ୍ୱେ କହୁଥିଲେ, "ରାଧେଶ୍ୟାମବାବୁ ଘର ଭଲ ପିଲା, କୋଟିକେରେ ଗୋଟିଏ—"

ସେ ମତେ ଅନର୍ଗଳ ପ୍ରଶଂସା କରିଗଲେ ମୁହଁ ଉପରେ, ମୁଁ ସ୍ୱର୍ଗରେ ବସିଲି ।

ପାନ ଆସିଲା, ଅନ୍ୟାନ୍ୟ ଦିନ ଛବ ମୋ'ର ଖବର ବୁଝେ ବେଶି, ଆଜ ପାନ ସାଙ୍ଗରେ ଛବ ନାହିଁ । ପାନ ଦି'ଖଣ୍ଡ ପକେଟ୍‌ରେ ପକେଇଲି ।

ଚାଲି ଆସିଲି । ଖଚଖ ଲାଗୁଥାଏ । ଭାବୁଥିଲି କ'ଣ ଗୋଟାଏ ପାଇଛୁ । ପୁଣି ଭାବୁଥିଲି କିଏ କେଉଁଠି ମତେ ସଂସାରରେ ଘୃଣା କରିଛୁ, ଅପମାନ ଦେଇଛୁ, କିଏ ଯେପରିକି କହୁଛୁ—"ତମର ମନ ହେଲେ ଆସ, ନ ହେଲେ ନାହିଁ, କିଏ ତମର ଗୋଡ଼ ଧରି ଖନତ କରୁଛୁ ?"

ମନ ପ୍ରଫୁଲ୍ଲ ନ ଥାଏ, ଲାଗୁଥାଏ—ପାଗ ଭଲ ହୋଇଥିଲା, ଜହ୍ନ ଉଇଁ ଆସୁଥିଲା, ହଠାତ୍ ଦେଲା ମେଘ ଡାକି । କ'ଣ ଏ ଘରେ ରହିଲେ ଯାହା ସୁଧାରିବାକୁ ପଡ଼ିବ । ଆଉଥରେ ଆସିବା ଦରକାର—ନିଶ୍ଚୟ ।

ଆଉଥରେ ଆସିବି ବୋଲି ଭାବେଁ, ଆସିପାରେ ନାହିଁ । ଗୋଡ଼ରେ କ'ଣ ଛନ୍ଦ ହୋଇଯାଏ ଯେପରି । ନିଜ ଭିତରେ ଅହେତୁକ ଗୋଟାଏ ଦ୍ୱନ୍ଦ୍ୱ ଚାଲେ, କିଛି ସମାଧାନ ହୁଏନାହିଁ ।

ସାତଦିନ ଘୁରି ପୁଣି ମୁଁ ଗଲି । ଛବିର ମୁହଁ ଉଜ୍ଜ୍ୱଳ ଦିଶୁଥିଲା, ପୁଣି ସେ ଗମ୍ଭୀର ହୋଇଗଲା, ମନେ ଘୁରି ଚାଲିଯାଏ ନାହିଁ । ବସିରହେ, ଅଥଚ ମୁହଁଟାକୁ ଲଦିଥାଏ—କଏ ଯେମିତି କ ଶବ୍ଦ ଖାଡିଏ ଧାଉଛି । ଛବି ଗମ୍ଭୀର ହେଲେ ଲେଖା ବେଶି ଗପେ । ମୋ'ର ସହାରର ସ୍ପୃହା ହୁଏନାହିଁ । ଆସିଲାବେଳେ ପୁଣି ଭାବିଲି, ଅଡୁଆ ରହିଗଲା, ସମାଧାନ କରିବାକୁ ଆଉଥରେ ଆସିବା ନିତାନ୍ତ ଦରକାର ।

ତହିଁଆର ଦିନ ସକାଳେ ଆସିଲି, ଖବର ପଢ଼ୁଥାଏ । ଛବି ଗାଧୋଇ-ପାଧୋଇ ମୁହଁ ପୋଛୁ ପୋଛୁ ଆସିଲା । ମୁହଁ ଶାନ୍ତ ଦିଶୁଥାଏ । ମୁଁ ତା'ର ଟେବୁଲ୍ ପାଖେ ବସି ଟିକିଏ ଉଦାର ଅଳଆ ଘାଣ୍ଟୁଥାଏ । ଏଣ୍ଟେଣ୍ଟ ଆସିଥିବା କେତେଟଣ୍ଡ ଶଠି ତହିଁରେ ଥାଏ । ଖଣ୍ଡେ ସାନ ଖାତାରେ ଗୋଟ ଗୋଟ ଅକ୍ଷରରେ କବିତା ପୁଞ୍ଜିଏ ।

ଘର ଝୁସି ହୋଇ ଦୁଆରମୁହଁରୁ ଛବି ଚାହିଁକଲା, "ଆରେ ! ଆପଣ କେତେବେଳେ ଆସିଲେ ?" ଲେଖା ଆଜ ଲେଖାର ବୋଜ ଆସି ଚାଲି ଯାଇଥାନ୍ତି ।

ମୁଁ ହସୁଥାଏ, କବିତା ପଢୁଥାଏଁ । ଛବି ଚମକ ଆସି ଥଣ୍ଡା ହାତରେ ମୋ'ର ହାତକୁ ଧରି ପକେଇ କହିଲା, "ଆରେ ! ଆରେ ! ସେହିପରି ତା'ର ହାତ ମୋ'ର ହାତରେ ଥାଏ । ମୁଁ ପଚାରିଲି—କେବକାର ଲେଖା ?"

ଛବି ଝିଙ୍କାଓିଟଣ କରି ମୋ ହାତରୁ କବିତା ଖାତା ଛଡ଼େଇ-ନେଲା । ମନେ ଭଲ ଲାଗୁଥାଏ, ସେ ହସି ହସି ଫାଟି ପଡ଼ୁଥାଏ । ମୋ ଉପରେ ଦଖଲ ଜାରିକରି ସେ କହିଲା—"ନାହିଁ ନାହିଁ, ଆପଣ ଏଗୁଡ଼ାକ ଦେଖିବେ ନାହିଁ, ଏଥିରେ କ'ଣ ଅଛି ? କିଛି ତ ନାହିଁ ।"

ମୁଁ ତା'ଠୁଁ ଆଖି ବୁଲେଇ ନେଇ ପଛଆଡ଼େ ତା'ର ପିଲାବେଳର ଛବି ଉପରେ ଆଖି ପକେଇଲି । ବଡ଼ ନିରେଖି ଦେଖୁଥାଏ । ସେ ଦୁଇ ହାତରେ ମୋ'ର ବେକ ବୁଲେଇ ନେଇ କହିଲା, "ଛି—ଛି—ଏ କ'ଣ କରୁଛନ୍ତି, ନାହିଁ ନାହିଁ ଟେଣେ ଅନାନ୍ତୁ ନାହିଁ ।"

ମୁଁ କହିଲି, "ହଉ, ତେବେ କୁଆଡ଼େ ଅନେଇବି ?"

ସେ ଜବାବ୍ ଦେଲା ନାହିଁ, ଖାଲି ହସିଲା । ମୁଁ ତା'ର ମୁହଁକୁ ଚାହିଁ ରହିଲି । ସେ ପୁଣି ଚମକିଲା । ତଳ ଓଠ ଥରୁଥାଏ । କହିଲା, "ଆପଣ ଏମିତି ଅନାନ୍ତୁ ନାହିଁ । ଏମିତି କ'ଣ, ଚାହିଁଛନ୍ତି ମ ଆରେ !" ସେ ଭୁମା ଭୁମା କହୁଥାଏ, ଫଁ ଫଁ ହଉଥାଏ, ତା'ର ସ୍ୱର ପ୍ରକୃତରେ ତରଳ ଶୁଭୁଥାଏ ।

ମୁଁ କହିଲି, "କିଛି ଝବର ନାହିଁ ? ତେବେ ମୁଁ ଯାଉଛି ।"

ସେ ଗୋଟାଏ ଚଉକି ଟାଣିନେଇ ମୋ'ର ଗୋଟାଏ କରକୁ ବସିପଡ଼ି କହିଲା—"ଯିବେ ? ଆଜି ଏତେ ତରଷ୍ଟି ? ହୁଁ, ମୋ'ର ହାତ ଦେଖିଥିଲେ କ'ଣ ଫଳାଫଳ କିଛି କହିଲେ ନାହିଁ ?"

କଣେଇ ହସି ମୋ'ର ମୁହଁକୁ ଅନେଇଁ ଦେଲା, ସାମ୍ନାରେ ତା'ର ନାଲିଷ୍ଟ ପାପୁଲି ଆଗେଇ ଧରିଲା, ମୁଁ ଖାଲି ତା'ର ପାପୁଲିକୁ ଚାହିଁଥାଏ, ଧୀରେ ଧୀରେ ସାଉଁଳୁଥାଏ, ବଡ଼ ଦୁର୍ବଳ ଲଗିଲା, କିଛି କହିପାରିଲି ନାହିଁ ।

ଲେଖା ଆସିଲା । ମୁଁ ଜାଣିବା ପୂର୍ବରୁ ଛବି ତା'ର ଆସିବା ଜାଣି-ପାରି ସୁସ୍ଥ ଗଳାରେ କହିଲା, "ଆସିଲୁ କିଲେ ନାନି ଆ, ହାତ ଦେଖେଇବୁ ଆ ।"

ଲେଖା ବି ମୋ'ର ପାଖକୁ ଆସିଲା । ବଡ଼ ଆଗ୍ରହ ଦେଖେଇ ଆଗ ବଳପଡ଼ି ତା'ର ପାପୁଲି ଧରି ପକେଇ କହିଲି, "ଆଣ୍ ଦେଖା ।"

ସେ ଟିକିଏ ସଙ୍କୁଚିତ ହେଉଥାଏ । ଯାହା ମନେପଡ଼ିଲା କହିଲି, ଶେଷରେ ମୁହଁ ଦମ୍ଭ କରି କହିଲି—

"ବାହାଘର ବି ହେବ ଚାରି ପାଞ୍ଚ ମାସରେ । ବେଶ୍ ଭଲ ବର ।"

ଛବି ମୋ ଆଡ଼କୁ ଝୁଙ୍କିପଡ଼ି କହିଲା, "ସତେ ସତେ ? ଦେଖ୍ ଲେ ନାନି କ'ଣ କହୁଚନ୍ତି ।

ଲେଖା ଲଜ୍ଜିତା ହେଲା । କହିଲା, "ତୋ ବାହାଘର କଥା ପଚାରୁନ୍ତୁ ।"

ଛବିର ମୁହଁ ଶେଥା ପଡ଼ିଗଲା । ମୁଁ କହିଲି, "ନା, ତାଙ୍କ ବାହାଘର୍ ଦେଢ଼ ବର୍ଷ ଡେରି ଅଛି ।"

ଛବି ଲାଜଖ ହୋଇ ଖଚେଇ ହୋଇ କହିଲା, "ହେଁ—।"

ସମସ୍ତେ ହସିଲୁଁ ।

କିଛି ମୁଁ ବୁଝିପାରେ ନାହିଁ, କେବଳ ଭାସି ଗ୍ଲେ ।

ଅନ୍ୟ ସବୁ ପ୍ରକାର ଦରକାରଠୁ ମୁହଁ ବୁଲେଇ ଆଣେ, ସବୁଯାକ ଦରକାର ମୋ'ର ଯାଏ ଗୋଟାଏ ମୁହଁରେ । ଲଗେ ଯେମିତିକି ସେମାନଙ୍କ—ମାନେ, ତା'ର ସାନ୍ନିଧ୍ୟ ମୋ'ର ଦରକାର, ତା'ଠୁଁ କଥା ଶୁଣିବା ଅତି ପ୍ରୟୋଜନ, ମୋ'ର ଜୀବନର କର୍ତ୍ତବ୍ୟ ତାଙ୍କୁ ଅର୍ଥାତ୍ ସେମାନଙ୍କୁ ଖୁସି କରିବା । ଅଥଚ କଥାରେ ବଖାଣି ବସିଲେ କି ଖିଅ ଜଣ୍ଡି ଧରି ବସିଲେ, ଗୋଟାଏ କିଛି ସରଳ ବିଶେଷ୍ୟ ଆଡ଼କୁ ମୋ'ର ଦରକାର ସବୁ ଗଡ଼େଇ ଆଣି ହେବ ନାହିଁ । ସେ କୌଣସି ଗୋଟାଏ ପ୍ରଣାଳୀ ଖୋଜେ ନାହିଁ, ହୁଏତ ବା ଖୋଜୁଥିବ, ମୋର କେବେ ମନେ ପଡ଼ନାହିଁ । ମୋ'ର କାମ କରିବା ଓ କେବଳ ସେଠିକି ଯିବା ଏତିକି କଥାରେ ମୁଁ ନିଜ ଭିତରେ ନିଜେ ସନ୍ତୁଷ୍ଟ ହୋଇଥାଏଁ ।

ଭଲ ବାଇସ୍କୋପ୍ ଆସିଲା, ସମସ୍ତେ ଗଲେ, ମୁଁ ଦେଖିବାକୁ ଗଲି ନାହିଁ । ଗୋଟାଏ ବାଜେ ବାଇସ୍କୋପ୍ ଆସିଥାଏ, ସେମାନେ ସେଦିନ ଛ'ଟା ବେଳେ ଯିବେ ମୁଁ ଜାଣିଥାଏଁ । ପାଞ୍ଚଟାବେଳେ ମୋ'ର ବାହାରି ପଡ଼ିବା କଥା । କିନ୍ତୁ ମୁଁ ଦେଖିଲି, ମୋର ଘରର କ୍ଲବ ପାଇଁ ବସି ବସି ଗୁଡ଼ାଏ ପ୍ରଶ୍ନ ତିଆରି କରିବା ନିତାନ୍ତ ଦରକାର । ଠିକ୍ ଛ'ଟାଯାକେ ମୋ'ର କାମ ଲାଗିଲା ।

ତା'ପରେ ମୁଁ ସାଇକେଲ ଚଢ଼ି ଛୁଟିଲି ।

ବାଟରେ ଯେ ତାଙ୍କ ଗାଡ଼ ମୋ ଆଗରେ ଦିଶିଲା, ସେଇଟା ଯେ ନିତାନ୍ତ ଗୋଟାଏ ଯୋଗର କଥା ଏଥିରେ କ'ଣ ସନ୍ଦେହ ଅଛି ? ଗାଡ଼ି କଟେଇ ଦେଇ ମୁଁ ଯାଇଥାନ୍ତି ବାହାରି, କିନ୍ତୁ ପକେଟରୁ ପାନ ସରିଗଲାଣି, ଟିକିଏ ଅଟକି ଯାଇ ପାନ ଦି'ପଇସାର କିଣିବାକୁ ପଡ଼ିବ । ପାନ ନ ନେଲେ କ୍ଲବ-ମେସ୍‌ରେ ମତେ ପାନ ଦିଅନ୍ତା କିଏ ? ପୁଣି ସେଇ ଗାଡ଼ିଟା ମୋ' ଆଗେ ଆଗେ, କି ବିପଦ ! ସେପାଖରେ ସେ ଟାଙ୍କିଟା ଛାଡ଼ି ମୁଁ ଏକଦମ୍ ଗସ୍ତାଏ ଗସ୍ତାଏ ଛୁଟିଲି କାହିଁକି ? ଠିକ୍ ଖିଆଲ ହେଲା ।

ଆଗେ ସତେ ତ, ସାଇକଲର ଘଣ୍ଟିଟା ଟିକିଏ ବିଗିଡ଼ି ଯାଇଛି । ତା'ପରେ ସେ ଗଳିଟା, ଠିକ୍ ଏତିକିବେଳେ ସେଠି ଗୁଡ଼ାଏ ପିଲା କଳିବଲି ହେଉଥିବେ, ସାଇକଲି ମାଡ଼ିଗଲେ ସେତେବେଳକୁ କିଏ ପାରେ ?

ଗାଡ଼ିଟା ଆଗେ ଆଗେ ଥାଏ ।

ମନେପଡ଼ିଲା, ଆଚ୍ଛା ଏବାଟେ ଯଦି ଆସିଲି, ଆମ ବୁଢ଼ୀ ମାଉସୀର ବୁଢ଼ୀ ନଣନ୍ଦଟି, ତା'ର ବଡ଼ ପୁତୁରା, ହେଇ ସେ ଆଗରେ ଗୋଟିଏ ଦୋକାନ ଦେଇଛି । କେତେଦିନ ହେଲା ବୁଢ଼ୀକୁ ମୁଁ ପଚ୍ଛିର ଆସି ନାହିଁ । ଯାଏ, ଟିକିଏ ଦେଖି ଆସିଲେ ଭଲ ହେବ ନାହିଁ ? ଦଶ ମିନିଟ୍ ଡେରି ହେଲେ ହେବ, ଟିଉସନ୍ କରୁଛି ବୋଲି ତ ମୁଣ୍ଡ ବିକି ନାହିଁ ?

ଗାଡ଼ି ପଛେ ପଛେ, କରେ କରେ ଗଲି । ଛବି ମତେ ଅନେଇଁ ଦେଉଥାଏ, ଲେଖା ବି ଦେଖିଥିବ ହୁଏତ । ବିଶେଷ କରି ଛବିର ଦୃଷ୍ଟି ଆକର୍ଷଣ କରି ମାଉସୀର ନଣନ୍ଦର ପୁତୁରାର ଘର ଦୁଆରମୁହଁରେ ଓହ୍ଲେଇ ପଡ଼ିଲି । ଛବି ଟିକିଏ ହସିଦେଲା । ଗାଡ଼ିଟା ଚାଲିଗଲା । ଭାରି ଖରାପ ଲାଗୁଥାଏ ।

ପୁତୁରା ଦୋକାନରେ ବ୍ୟସ୍ତ, ଗୁଡ଼ାଏ ଗରାଖି କଟାଳ ଲଗେଇଥାନ୍ତି —ଅଳଙ୍କାରଗୁଡ଼ାକ ଏତେଦିନ ହେଲା ତିଆରି ହୋଇନାହିଁ କାହିଁକି ? ଘରେ କେହି ନ ଥାନ୍ତି, ଗାଁକୁ ଗଲେଣି ସାତ ଦିନ ହେବ, ନାହା ଆସିଥିଲି ।

ସେଠୁ ଫେରି ଟିଉସନ୍‌କୁ ଗଲି । ଅନ୍ୟମନସ୍କ ଲାଗୁଥାଏ । ଦେଖିଲି ପ୍ରଶ୍ନଗୁଡ଼ାକ, ଏତେ ପରିଶ୍ରମ କରି ଲେଖିଥିଲି, ଆଣିଲାବେଳକୁ ଭୁଲି ଯାଇଛି । କ'ଣ ଆଉ କରାଯାଏ ?

କୋଠା ଉପରୁ ହଠାତ୍ ପଡ଼ିଗଲେ ଛବି ଡବ ଡବ ଆଖିରେ ଅନେଇଁଦିଏ । ବାଟରେ ଘାଟରେ ଗାଡ଼ିରୁ କେତେଥର ଅନାଏଁ ।

ତା'ର ପଦାର ଗୁହାଁଣୀ ଆଉ ଘର ଭିତରର ଗୁହାଁଣୀରେ କେତେ ତଫାତ୍ ପଡ଼ିଯାଏ, ଏତେ ଜନଗହଳରେ ପଦାର ଗୁହାଁଣୀ ବଡ଼ ଆପଣାର ବୋଲି ମନେହୁଏ । ଘରେ କେମିତି ଆଉ ଜାଣିଏ, କେତେବେଳେ ହଠାତ୍ ନବାବ୍, କେତେବେଳେ ଏତେ ବାଙ୍ଗ୍‌ମୟ ଯେ ମୁଁ ବଡ଼ ଗୋଳମାଳରେ ପଡ଼ିଯାଏ ।

କଣ୍ଠଦାନ ପରେ—ଘନିଷ୍ଠତା ବଢ଼ି ଯାଇଥାଏ । ଛବି ପାଇଁ ଖଣ୍ଡିଏ ବହି ଆଣିଥାଏଁ ଉପହାର ।

ମୁଁ ଜାଣେ ଲେଖା ତାକୁ ବେଶି ପଢ଼ିବ, ଛବି ହାତରେ ଧରିବ ବେଶି ।

କଥା କହୁ କହୁ ମୋ ହାତ ଲେଖା ନାଁ ବାରମ୍ବାର ଛବି ଉପରେ ପଡ଼ୁଥାଏ, ମୁହଁ ଲାଲ୍ ପଡ଼ିଯାଉଥାଏ । ମଝିରେ ଟେବୁଲ୍, ଗୋଟାଏ ପାଖେ ଲେଖା ବସିଛି, ସମ୍ନାରେ ଛବି । ବହିରେ ଲେଖାର ନାଁ ବି ଥିଲା । ଲେଖା ବହି ଛଡ଼େଇ ନେଲା, ଛବି ମୁହଁ ଶୁଖେଇ କହିଲା—

"ଆମେ ଆପଣଙ୍କୁ କ'ଣ ଉପହାର ଦେବୁଁ ?"

ଲେଖା ଥଟ୍ଟାକରି କହିଲା, "କ'ଣ ଦେବାକୁ ମନ ହଉଛି ?"

ଛବି ପଚାରିଲା—"ତୁ କ'ଣ ଦେବୁ ?"

ଦୁହେଁ ଦୁହିଁଙ୍କୁ ଅନାଇଁ ହସିଲେ, ମତେ ବଡ଼ା ବଡ଼ା ଲାଗୁଥାଏ ।

ନଳିନାକ୍ଷବାବୁ ଆସିଲେ । ଅବସ୍ଥା ସୁଧୁରି ଗଲା, କହିଲେ—

"ଓହୋ ! ଆଜି ଯୋଉ କାମ, ବର୍ତ୍ତମାନ ମଣିଷ ଘରକୁ ଫେରୁଛି । ଛବି, ଗଲୁ ଏ କୋଠ୍ରୀ ରଖିଦେଇ ଆସିଲୁ, ଲେଖା ତୁ ଯା ପାନ ଆଣିବୁ ।"

ଦୁହେଁ ଗଲେ । ତାଙ୍କର ସ୍ତ୍ରୀ କବାଟ ପାଖକୁ ଚାଲି ଆସିଥାନ୍ତି ।

ନଳିନାକ୍ଷବାବୁଙ୍କର ଭାରି ଉତ୍ସାହ ଜଣା ପଡ଼ୁଥାଏ । କହିଲେ—

"ଜାଣନ୍ତି ଆଜି କ'ଣ ଘଟଣା ହେଇଛି ? ଶୁଣ ହୋ, ରାଧେଶ୍ୟାମ-ବାବୁ ତ ଆମ ଘରର ଲୋକ, ତାଙ୍କ ଆଗରେ ନ କହିବା ଆଉ କାହାକୁ କହିବା ? ଆମ ହରି ଭାଇନାଙ୍କୁ ତ ପଠେଇଥିଲି ।"

ହରିଭାଇନା କିଏ ଓ କୁଆଡ଼େ ତାଙ୍କୁ ପଠା ହୋଇଥିଲା, ମୁଁ ଜାଣି ନ ଥିଲି । ସେ କହୁଥାନ୍ତି—

"ନାହିଁ ହରିଭାଇନା ନଉ ପଚେ ଦଶଟଙ୍କା, ବୁଢ଼ା ଏକ୍ସପାର୍ଟ୍ ମଧ୍ୟସ୍ଥ, ଯେଉଁଥିରେ ହାତ ଦେବ ହେବୁଥିରେ ସିଦ୍ଧି । ବୁଝିଲ ହୋ, ଏଥର ଗଣ୍ଠି ର ମୁଣ୍ଡି ର ବାନ୍ଧ । ବୁଝିଲେ ନା, ରାଧେଶ୍ୟାମବାବୁ—ସେ କଣ୍ଢେଶ୍ୱମୋହନ, ତା' ଘର ରାଜି ହୋଇଛନ୍ତି ଲେଖା ବିଷୟରେ ବାହାଘର କରିବାକୁ । ଆଉ ରଘୁନାଥବାବୁ ହରିଭାଇନାକୁ କହିଲେ— "ଯଦି ଛବି ବିଷୟରେ ବାହାଘର କରିବ ତ ମୁଁ ରାଜି ।"

ହରିହାଇନା ତ ଲେଖା ବିଷୟରେ କଣୋଷ୍ଠମୋହନ ସଙ୍ଗେ ସମ୍ବନ୍ଧ ପକ୍‌କା କରି ସାରିଥିଲେ, ଆଜି ରଘୁନାଥବାବୁଙ୍କ ଛବି ବିଷୟରେ ନାସ୍ତି କରନ୍ତେ କାହିଁକି ? କହିଦେଲେ—"ହଜୁ, ଆପଣଙ୍କର ଯେଉଁଥିରେ ରାଜି ।"

ତା' ସେ ରଘୁନାଥବାବୁ ଏକଦମ୍ ଜବାବ୍ ଠିକଣା କରିଦେଲେ । ଯାଇହଉ ବର୍ଷିକା ବଢ଼େଁ ଭଲ ଜାଗା, ନା କ'ଣ କହୁଛନ୍ତି ରାଧେଶ୍ୟାମ-ବାବୁ ?

ହରିହାଇନା ତେବେ କହିଛନ୍ତି ଗୋଟିଏ କଥା—"ବାହାଘର ନିକଟରେ ହେବ, ସେଥିପାଇଁ ତମେ ପ୍ରସ୍ତୁତ ହଉଥା । ଇତ୍ୟବସରେ ଗାଁକୁ ଚାଲିଯା, ସେଠି ଯାଇ ସବୁ ସଜାଲ୍ ସାଜାଲ୍ କର ।"

ହରିହାଇନା କହିଲେ—"ବାବୁ ଯେତେ ବଡ଼ ଆଜକାଲିକା ଫେସନବାଲି ତମେ ହୁଅ ପଛେ, ବିହାଘର ଠିକଣା ହେଲା ଉତ୍ତାରୁ ବଡ଼ିଲ ଝିଅଙ୍କୁ ଆଉ ସହରରେ ତମେ ରଖ ନାହିଁ, ଗାଁକୁ ନେଇଯା । ସହରରେ ବାର ନବରଙ୍ଗ, ଭାଙ୍ଗିବା ଭଙ୍ଗେଇବା ଲୋକ ତ ଏଠି କମ୍ ନାହାନ୍ତି ? ଖାଲି ବଦ୍ ଲୋକଗୁଡ଼ାକ ।

ନା କ'ଣ ରାଧେଶ୍ୟାମବାବୁ, ଏଁ ?—"

ମୋ'ର ତଣ୍ଟି ବନ୍ଦ ହୋଇ ଯାଉଥାଏ । ମୁଁ କହିଲି, "ନିଶ୍ଚୟ, ନିଶ୍ଚୟ ।"

ଲେଖାର ବୋଉ ଭଗବାନଙ୍କୁ କୋଟି ନମସ୍କାର କଲେ, ଆନନ୍ଦରେ ଗୋଡ଼ ତଳେ ପଡ଼ୁ ନ ଥାଏ । ମୋ' ପାଇଁ ଭଲ ଜଳଖିଆ ଆସିଲା, ପାନ ଆସିଲା । ସେଇ ଛବି ଆଣି ଦେଇଗଲା, ତା'ର ମୁହଁ କଳାକାଠ ପଡ଼ି-ଯାଇଥିଲା, କେଉଁଠି କାନପାତି ସେ ସବୁ କଥା ଶୁଣିଥିବ ନିଶ୍ଚୟ । ନଳନାକ୍ଷ-ବାବୁ ଆଉ ତାଙ୍କ ସ୍ତ୍ରୀ ଉଭୟଙ୍କ ତାଡ଼ନାରେ ମୁଁ ଜବରଦସ୍ତି ସେଗୁଡ଼ାକ ଗିଳିଲି ।

ପଦାକୁ ଆସିଲି । କିଏ ମତେ ତଣ୍ଟିଆ ମାରି ସେ ଘରୁ ତଡ଼ିଦେଲା ପରି ଲାଗୁଥାଏ । ମୁଣ୍ଡ ଘାଁ ଘାଁ, ଛାତି ଭିତର ପାଣି ହୋଇ ଯାଉଥାଏ । କ'ଣ ହୋଇଯାଉଥାଏ, ସତେ ଯେପରିକି ସବୁ ମୋ'ର ସରିଛି ।

ଖୁଣ୍ଟ ଉପରେ ନାଲ୍‌ଟେଣଟା ଆହୁରି ବିରକ୍ତ ଲାଗୁଥାଏ, ଭାଙ୍ଗି ଦେବାକୁ ମନ ହେଉଥାଏ । ଥିରି ଥିରି ବସାକୁ ଲେଉଟି ଗଲି ।

ମୁଁ ଯାହାଙ୍କର ଭଲ ଖୋଜୁଥିଲି ତାଙ୍କର ଭଲ ହୋଇଛି, କିନ୍ତୁ ମୋ ମନରେ ଶାନ୍ତି ନାହିଁ । ମନ ଭିତରୁ ପ୍ରତିବାଦ ଆସୁଥାଏ, 'ସ୍ୱା ହୋଇ-ପାରେ ନାହିଁ ।' ମନ ଜଳି ଯାଉଥାଏ । ମୋର ଉପର ମନର ଭଲ ଖୋଜିବାର ମୁଖାପିନ୍ଧା ଏକା ଝିଙ୍କାକେ କଏ ଚିରି ଫୋପାଡ଼ି ଦେଉଥାଏ ।

ସ୍ତ୍ରୀ—

ମନ ଭଲ ନ ଥାଏ । ଅନ୍ୟମନସ୍କଭାବେ ବସାରୁ ମୁଁ କେତେ-ବେଳେ ବାହାରି ପଡ଼ିଛି । ମନର କୋହ ମୁଣ୍ଡକୁ ଚଢ଼ିଗଲା । ଜୋର୍‌ରେ ଜୋର୍‌ରେ ବାଟ ଚାଲିଲେ ତରତର ଭାବନା ସଙ୍ଗରେ ମନର ତାଳ ରହେ, କେମିତି ଯେପରି ଆପଣା ଆପେ ପ୍ରବୋଧ ଆସେ—'ମୁଁ ଭୁମ୍ବା ହୋଇ ବସି ନାହିଁ, କ'ଣ ଗୋଟାଏ କରୁଛି ।'

କ୍ଳାନ୍ତ ହୋଇ ସହର ଶେଷରେ ମୁର୍ଦ୍ଦାରଖାନା ପାଖେ ଗୋଟିକିଆ ବରଗଛ ତଳେ ମୁଁ ବସି ପଡ଼ିଥିଲି । ମନର ଅବସ୍ଥା ସାଙ୍ଗେ ସାଙ୍ଗେ ମନ ନିଜେ ପରିସ୍ଥିତି ବାଛୁନିଏ । ଉଦାସ ମନରେ ଉଦାସ ପରିସ୍ଥିତି—ସହାନୁଭୂତି ହେଉଥିଲା । ଏଠି ସବୁ ଶେଷ, ସବୁ ଶାନ୍ତ ।

ଉଠି ଠିଆହେଲି । ସହର ଏଠୁଁ କେତେ ଦୂର ! ଅନ୍ଧାର ଭିତରେ ତା' ଉପରେ ତା' ଉପରେ ଖଞ୍ଜା ହେଲିପରି ଅନ୍ଧାରି ସହରର ଆଲୁଅ । ସେଠି କୋଳାହଳ, ସେଠି ମଣିଷ ସାଲୁସାଲୁ, ହୁଏତ ଜୀବନ ବା । ମୋ'ର ସେଠି କିଛି ନାହିଁ—ସବୁ ଥିଲା, କିଛି ତ ଆଉ ନାହିଁ ।

ସେଇ ଆଲୁଅ ଜଳ ଜଳ, କୋଠା ବଲବଲ ବଡ ସହର—ସେ ମୋ'ର ପର, ସେ ମୋ'ର ଶତ୍ରୁ, ମୁଁ ଅଲଗା, ସେ ଅଲଗା ।

ଖୁବ୍ ଦୃଢ଼ଭାବରେ ମୋ'ର ମନ ହେଉଥାଏ, ଆଜ ବଢ଼ାବଢ଼ି କଥା ଉଠିବାରୁ ମନର ତଳ ମନର ଉପର ପାଖେ ଧରାଦେଇ ଜଣେଇ ଦେଉଥାଏ—ଛବିକୁ ମୁଁ ଭଲପାଏଁ, ଛବିକୁ ମୁଁ ଲୋଡ଼େଁ, ଛବି ବିନା

ମୋ'ର ଜୀବନ ଏ ଅପନ୍ତରା ବାଲି ମଶାଣି ପରି । ଏତେଦିନ ଏପରିଭାବେ କଥାଟାକୁ ମୁଁ ଧରିପାରି ନ ଥିଲି ।

ଏଥର ଆସିଲେ କିଏ କିଏ, ଅନ୍ଧାରେ ଅନ୍ଧାରେ ଛବିକୁ ମୋ ମୁହଁ ପାଖରୁ ଦୂରକୁ ନେଇଯିବାକୁ । ତେଣୁ ଆଜି ମୁଁ ତା' ସନ୍ଧି ପାଉନି ନାହିଁ । ଆଉ—ମୁଁ ତାକୁ ଏତେ ଭଲପାଏ, ତା'ର ଭଲ ପାଇବାରେ ମୁଁ ଏକବାରକେ ବୁଡ଼ି ଯାଇଛି, ତାକୁ ଛାଡ଼ି ମୁଁ ବଞ୍ଚିରହିବା ଅସମ୍ଭବ ।

କେବଳ ଏତିକି ମୁଁ ଜାଣେଁ, ଆଉ ସବୁ ଗୋଳମାଳିଆ—ଭଲ ପାଇବା କି ଜିନିଷ, ଭଲ ପାଇଲେ କ'ଣ କ'ଣ ହୁଏ, କେବଠୁ ମୁଁ ଭଲ ପାଇବାକୁ ଆରମ୍ଭ କଲି—ଏସବୁ କଥାର ଜବାବ୍ ମତେ ବି ଜଣାନାହିଁ ।

ଛବି ମତେ ଭଲପାଏ କି ?

ଦିନ-ଦିନକର କଥାଭାଷା, ଗୁହାଁଣୀ, ଭଙ୍ଗୀ ପୁଣି ସ୍ୱପ୍ନର ଦେଖିଲି, ଛବି ମତେ ଖୁବ୍ ଭଲପାଏ । ମୁଁ ଅନ୍ଧ ଥିଲି, ତା'ର ଜବାବ୍ ଦେଇନାହିଁ । ଜବାବ୍ ନ ପାଇ ମୁଦ୍ଧା ସେ ଆତ୍ମହରା ହୋଇ ଭଲପାଇ ଚାଲିଛି ।

ମନେ ମନେ ଆମେ ପରସ୍ପରର, ସ୍ୱାମୀ ବି ବିଧାତାର ବିଧାନ ।
କେଉଁ ଉତ୍ତରରେ ବୁଝିଲି ! କେବଳ ଧକ୍କା ବାଜି ବୁଝିଲି !
ସହିଁରେ ଧକ୍କା ବାଜିଲା, ତା'ରି ନାଁ ସମାଜ ।

ତା'ରି ନାଁ ସମାଜ, ସେ ଦୈବଠୁଁ ବି ନିର୍ଦ୍ଦୟ, କେତେ ପ୍ରେମିକ, ପ୍ରେମିକାଙ୍କର ତତଲା ଲୁହ ତା' ଗୋଡ଼ତଳେ ନଈ ପରି ବୋହିଯାଇଛି ।

ସେଇ ନଈବାଲି ପଠାରେ ବି, କେତେ ହାଡ଼ଗୋଡ଼, ଅଣାଚଲୁ ବର୍ତ୍ତମାନଯାକେ—

ଦୈବକୁ ଗାଳି ଦେଲି, ସମାଜକୁ ଗାଳି ଦେଲି, କୋହ ବଢ଼ିଲା, ସାନ୍ତ୍ୱନା ମିଳିଲା ନାହିଁ । ଦୂରର ସେ ଆଲୁଅ ଜଳ ଜଳ ବଡ଼ ସହର, ସେଠି ବି ସମାଜର ସଜୁଡ଼ି ।

ସମାଜ ଅଛି କି ନ ଅଛି, ଜଣାପଡ଼େ ନାହିଁ; ଯେତେବେଳେ ଖେଞ୍ଚାଏ ମାରେ ସେତିକିବେଳେ ଜଣାପଡ଼େ । ମନ ଭିତର କୁହୁଳି ଉଠି ମଣିଷ କହେ—"ଭାଙ୍ଗିଦିଅ ଏ ସମାଜ, ମଣିଷ ପାଇଁ ସମାଜ, ସମାଜ ପାଇଁ ମଣିଷ ନୁହେଁ ।"

ଏତେ ଦୁଃଖ ଭିତରେ ବିଦ୍ରୋହ ଜଳିଉଠିଲା । ଭାବିଲି, କାହାର ମୁଁ ଖାଏ ନା ଧାରେ ଯେ ପରର ମୁହଁକୁ ଅନାଇଁ ଶାନ୍ତ ସୁବୋଧ ହୋଇ ବସି ରହିବି ?

କେତେ ଲୋକ ସମାଜକୁ ଡେଇଁ ଆପଣାର ସୁଖ କରୁଛନ୍ତି, ମୁଁ ବା ନ କରିବି କାହିଁକି ?

ଗୁଡ଼ାଏ ଭାବିଗଲି, ଅନ୍ଧାର ଭିତରେ ଆଶା ଦିଶୁଥାଏ ଝଲକରି, ପୁଣି ଭାବୁଥାଏଁ ଛିଃ କ'ଣ ଭଲ ହେବ ? ଛିଃର କ'ଣ ଏତେ ବଳ ଅଛି ?

ସେପଟେ ତା'ର ଘରଲୋକେ, ଏ ପଟେ ମୋ'ର, ଦୁଇ ତରଫ ରକ୍ଷଣଶୀଳ । ଏଇ ନିର୍ଦ୍ଦୋଷ ବୁଢ଼ାବୁଢ଼ୀମାନଙ୍କ ମୁହଁରେ କାଳି ବୋଳି ଦେଇ ମୁଣ୍ଡ ଉପରେ ଗୋଡ଼ ପକେଇ ମାଡ଼ି ଦଳି ଦେଇ ଯିବାକୁ ପଡ଼ିବ । କିଏ ପାରିବ ? ଛିଃ ନା ମୁଁ ?

ବନ୍ଧନ—କେତେ ସ୍ନେହର କେତେ ସ୍ୱାର୍ଥର । ସ୍ୱାର୍ଥର ବନ୍ଧନ କାଟିହେବ, ସ୍ନେହର ବନ୍ଧନ କାଟିବାକୁ ସତ ବଳେ ନାହିଁ ।

ଘର ଦୁଃଖରେ ଫେରିଲି । ଘଣ୍ଟାଗୋଟାକ ଯେ କେମିତି କଟିଲା ମୁଁ ଜାଣେ ନାହିଁ । ସକାଳକୁ ନିଦରୁ ଉଠିଲାବେଳକୁ ଘର ଖୁସି ଲାଗିଲା । ଧୀରେ ଧୀରେ ସୁଷୁପ୍ତିର ଚଟାଣ ଦବିଗଲା ମନ ତଳକୁ ବୋଲି । ପୂର୍ବ ଶୋକ ବାହୁଡ଼ିଲା ।

କେବଳ ମେଘୁଆ ଆକାଶ—ନଗ୍ଗୁଟିଆ ବଡ଼ ପୋଖରୀକୂଳ, ଭଙ୍ଗା ଦେଉଳ, ଖସି ପଡ଼ୁଥିବା ଫଟା କାନ୍ଥରେ ଓସ୍ତ ଗଛ, ପାଖରେ ମଶାଣି, ସେଠି ଥଣ୍ଡା ଅଙ୍ଗାର ପାଉଁଶଗଦା, ଖଣ୍ଡ ଖଣ୍ଡ କଳା ପିମ୍ପାମର ପୋକର ବାଉଁଶ, ଧୋବ ଫରଫର ହାଲୁକା ମେଘ ମିଶା ସାଇଁ ସାଇଁ ପବନ ।

ବୃଥା ଏ ଚେତନା—ମା ପେଟରୁ ବସୁଧାରେ ପଡ଼ି କୁଆଁ କୁଆଁ ଡାକ ଆଖି ବୁଜି ଦେଇଥିବା ପିଲା ପରି ।

ତହିଁକି ସାନ୍ତ୍ୱନା ନାହିଁ........

ଉପରଓଳ ଗଲ, ଲେଖା ଖୁସିଥାଏ । ଛବିର ମୁହଁରୁ କଳାପାଣି ବୋହି ପଡ଼ୁଥାଏ । ଖାଲି ଆଖି ଢ଼'ଟା ନଆଁ ପରି । ନେଳିଙ୍କ ଶୁଖିଲା ଓଠରେ ଅଭ୍ୟାସଗତ ହସ ହସି ଛବି ସମ୍ଭାଷଣ କଲା, ଘରି ଛକପକ ହେଉଥାଏ ।

ପଚାରିଲି, "କେବେ ଯାଉଛ ?"

ଲେଖା କୁଟିଳ ହସ ହସି ଓଲଟି ପଚାରିଲା, "କୁଆଡ଼େ ?"

ଜାଣି ଜାଣି ମାଣ୍ଡୋଇଲି, ନଗ୍ରେଜା ପଡ଼ିଲା । ନଳନାକ୍ଷବାବୁ ନ ଥାନ୍ତି, ମୁଁ ପ୍ରାୟ ତାଙ୍କୁ ଅପେକ୍ଷା କରି ବସିଥାଏ । ଘଣ୍ଟି ଠୁଣ୍ଣ ଠୁଣ୍ଣ ହେଲା, ବଡ଼ ଦୁର୍ବଳ ଶୁଭୁଥାଏ ।

ଅଭିମାନ ହେଲା ମୋ'ର ଏ ଘଣ୍ଟି ଉପରେ, ସ୍ୱାର ପାଇଁ ଯେତେ ବ୍ୟବଧାନ, ସ୍ୱାର ଉପରେ ସମାଜର ହାଡ଼ବାଡ଼ ତିଆରି ହୋଇଛି ମୋ'ର ପାଇଁ ।

ଏକୁଟିଆ ଭାବୁଥିଲି, କେବେ ପହିଲେ ଆସିଥିଲି ଏ ଘରକୁ, ଏଣିକ ଏ ଘର ଦୁଆରେ ମୋ'ର ଗୋଇ ପଡ଼ିବ ନାହିଁ, ପଦାରେ ଭୂତ ଜଗିଥିବ, ତା'ର ଗୋଇ ପଡ଼ୁଥିବ ସାମ୍ନାର ଏଇ ରାସ୍ତାରେ । ଏଣିକ ଶେଷ—ସବୁ ଶେଷ ।

ଅନ୍ୟମନସ୍କ ହୋଇ ବସିଥିଲି । କିଏ ଆସି ପଛଆଡ଼ୁ ଆଖି ବୁଜି ଧରିଲା—କଅଁଳ—ଉଷୁମ—ଆଙ୍ଗୁଠି ଥରୁଥାଏ । ମୁଣ୍ଡ ପଛକୁ ଝୁଙ୍କି ହୋଇ ଯାଇଥାଏ । ଟପ ଟପ ଉଷୁମ ଲୁହ ମୋ'ର ମୁହଁ ଉପରେ ଝଡ଼ି ପଡ଼ିଲା ।

ଆସ୍ତେ ଆଖି ଖୋଲିଲି । କହିଲି, "ଛି ଛବି !—ସୁନାଟି ପରି—କାନ୍ଦୁଛ ?"

ସେ ଆହୁରି କାନ୍ଦିଲା ।

କିଛି ସମୟ ପରେ— ।

କହିଲି, "ଛବି—ମନରେ ଯଦି ଜୋର୍ ଅଛି ଆସ ବାହାହେବା । ଭଲ ପାଇବା ପାପ ନୁହେଁ । ବାପାଙ୍କୁ କହିବି । ତୁମେ ନିଜେ ମଧ୍ୟ କହ । ସମାଜ ବଦଳୁଛି, ବଦଳୁଥିବ । ଲୋକେ କହିବେ, କହନ୍ତୁ, ଯାହା ଉପରେ ନିର୍ଭର ନାହିଁ ତାକୁ ମୁଁ ଡରେନାହିଁ । ଆମେ ବାହାହେବା, କେହି ଅଟକେଇବେ ନାହିଁ । କହ ଛବି, ରାଜି ତ ?"

ସେ ଆହୁରି କାନ୍ଦିଲା, କହିଲା, "କାହିଁକି ଆପଣ ମୋ ପାଇଁ ଏତେ ଦୁଃଖ ମୁଣ୍ଡେଇବେ ? ଆପଣ କ'ଣ ବାପା ବୋଉଙ୍କୁ ଜାଣନ୍ତି ନାହିଁ ? କ'ଣ ବୋଲି କହିବେ ତାଙ୍କୁ ? କି ଜବାବ୍ ଦେବେ ସେମାନେ ? ...... ମୁଁ ମଲେ ବି ଆପଣଙ୍କୁ ଭୁଲି ପାରିବି ନାହିଁ—"

ତା'ର ହାତ ଧରି ପକେଇଲି । ମୋ'ର ପ୍ରସ୍ତାବକୁ ସେ ଆହୁରି ଆହୁରି ମୁଣ୍ଡ ଝାଙ୍କୁଥାଏ, ଆଉ ନାହିଁ ନାହିଁ କହୁଥାଏ, ଆଉ କାନ୍ଦୁଥାଏ ।

କେତେ ସମୟ ଏପରି ବସିଥାନ୍ତି ମୁଁ ଜାଣେ ନାହିଁ । ନଳିନାକ୍ଷ-ବାବୁଙ୍କ ପାଟି ଶୁଭିଲା । ଆମେ ସମସ୍ତେ ତାଙ୍କୁ ଦେଖିବାକୁ ଗଲୁଁ । ଛବି ରହିଲା ।

ସେ କୌଣସିମତେ କଥା କଟେଇ ମୁଁ ବାହାରି ଚାଲିଗଲି ।

ଆଉ ଯାଇନାହିଁ ।

ତା'ପରେ—ବହୁତ କୁଣିଆଁ ଆସିଥାନ୍ତି—ଘର ଭରି ଲୋକମାନେ, ଯା' ଆସ ସବୁବେଳେ । ପ୍ରକାର ପ୍ରକାର ମଣିଷ ।

ସେମାନେ ଯିବା ଦିନ, ନଳିନାକ୍ଷବାବୁ ନିଜେ କହିଯିବାକୁ ଆସିଲେ । ବହୁତ ଅନୁରୋଧ କଲେ, କଟକରେ ତାଙ୍କ ଘରକୁ ଯେପରି ମୁଁ ନିଶ୍ଚୟ ଯିବି । ଆଉ ହଁ, ସେ ତ ଚାଲି ଯାଉଛନ୍ତି, ଅବଶ୍ୟ ବସାରେ ଜିନିଷ ବେଶି ନାହିଁ; କିନ୍ତୁ ବେଳେ ବେଳେ ମୁଁ ଟିକିଏ ନଜର ରଖିଥିଲେ ସେ ବଡ଼ ଉପକୃତ ହୁଅନ୍ତେ ।

ଗାଡ଼ି ସଜା ହୋଇଥାଏ । ଏତେ ଲୋକମାନଙ୍କରେ ମତେ ସଙ୍ଗେ ନିବାକୁ ତାଙ୍କୁ ବେଳ ହେଲା, ସେଥିପାଇଁ ମୁଁ ଖୁବ୍ ଧନ୍ୟବାଦ ଦେଲି ।

ଗପ କରୁ କରୁ ସେହିପରି ଖାଲି ଦେହରେ ତାଙ୍କ ଘରଯାକେ ଚାଲିଗଲି । ସମସ୍ତେ ଲୁଗାପଟା ପିନ୍ଧି ପିଣ୍ଡାରେ ଠିଆ ହୋଇଥାନ୍ତି ।

ଛବି ଥରେ ଦି'ଥର ଚାହିଁଲା । ତା'ର ଚାହାଣୀରୁ ତା'ର ଓଠର ଭଙ୍ଗୀରୁ ମୁଁ ତା'ର ମନର କଥା ଆପେ ବୁଝିପାରିଲି ।

ଏତେ ମଣିଷରେ ସେ ତା'ର ମନର କଥା କହିଦେଇଗଲା— ତା'ର ଭଲ ପାଇବାର ନିଷ୍ଫଳ ଘୋଷଣା—

"ମୁଁ ତୁମର ତୁମର—"

ଗାଡ଼ି ଚାଲିଗଲା ।

ଛବି ପଛେଇ ପଛେଇ ଚାଲିଲା ପରି ଲାଗୁଥିଲା ।

ଛବି ଚାଲିଗଲା, ଆଜି ଆଉ ତା'ର ସନ୍ଧାନ ନାହିଁ ।

ଦୁଇଦିନ ପରେ ବସା ବଦଳେଇ ମୁଁ ବି ଚାଲିଗଲି ସେଠୁ ବହୁତ ଦୂରକୁ ।

ମନ ଭାଙ୍ଗି ପଡ଼ିଥିଲା, ଆଶା ନ ଥିଲା ଆଉ କେବେ ଯୋଡ଼ିହେବ ବୋଲି । ଦେହ ଝିଡ଼ିଗଲା ଦିନୁଁ ଦିନ । ପଣ କଲି, ଅବିବାହିତ ରହିବି । ଅନେକ ଦେଶରେ ଅନେକ ଅବିବାହିତ ରହନ୍ତି ବୋଲି ବହିରେ ଅଛି । କାମିକା ଲୋକ, ଯେ ଜୀବନର ମୂଲ୍ୟ ବୁଝେ—ତା' ପକ୍ଷରେ ବିବାହ ପ୍ରୟୋଜନ ନାହିଁ । ଯେଉଁ ବିବାହ ଭଲ ପାଇବାର ଫଳ ନୁହେଁ, ସେ ବିବାହ ନୁହେଁ ।

ଏହିପରି ଅନେକ ଚିନ୍ତା ମୋ ମନରେ ଥିଲା, ଜୀବନକୁ ସଂସାରକୁ ତୁଚ୍ଛ କରିଦେବା ଭଳିଆ ଚିନ୍ତା, ହିଁ ପଶିଲା ମନରୁ ଯାହା ବାହାରେ । ତା'ର ବି ଗୋଟାଏ ଭଗିଣୀ ଅଛି, ତା'ର ରୂପ ଅଛି, ସେ ମନକୁ ଭୁଲାଏ । କିଛି ତିକ୍ତ ଆନନ୍ଦ ।

ଦିନ ଗଲା । ଚବିଶ ଘଣ୍ଟାରୁ ଘଣ୍ଟାକୁ, ଅଧଘଣ୍ଟାକୁ ଆସିଲା ଛବି ବିଷୟରେ ଚିନ୍ତା । କ୍ରମେ ଦିନକିଆ ନ ହୋଇ ସେ ହେଲା ସମସ୍ତ ସମୟରେ, କେତେବେଳେ କେଉଁପରି ଅବସ୍ଥାରେ ହଠାତ୍ ମନେପଡ଼େ, ମନରେ ଚୋଟ ମାରେ, ଗୁମ୍ ହେବାକୁ ମନ ହୁଏ, ଦିନେ ଦି'ଦିନ ରହି ଗୁମ୍‌ସୁମ୍ ବଳେ କଟିଯାଏ । ଛୋଟ ଛୋଟ କଥାରୁ ସେ ମନେପଡ଼େ ଅଜାଣତରେ, ହସୁ ହସୁ ହସ ଅଟକିଯାଏ ।

ଭାବିଥିଲି ଆଜି ହସିବି ନାହିଁ ବୋଲି । ପୁଣି ହସିଲି, ପୁଣି ଆହାର ଧରିଲି । ଛବି ରହିଲା ମନର ଗହ୍ୱର ତଳରେ, ବେଳ କାଳକୁ ଉଠି ଖୋଞ୍ଚା ମାରିବାକୁ ।

ଶୂନ୍‌ଶାନ୍ ଲମ୍ବା ନାଳି ସଡ଼କରେ କେବେ ଗୋଟିକିଆ ବାଟୋଇ ଜଣକୁ ଦେଖିଥିଲି ।

ଗୋଡ଼ସାକ ତା'ର ଧୂଳି, ନଳି ଗୋଡ଼ରେ ଶିର ଟଣକେ ଉଠୁଛି, କପାଳରୁ କେଶ କେଶ ଝାଳ ନିଗିଡ଼ି ପଡ଼ୁଛି ଆବୁଡ଼ା ଖାବୁଡ଼ା ଦାଢ଼ିର ଲୁଡ଼ିବାଟେ । କାନ୍ଧରେ ଖଣ୍ଡେ ସାନ ମୋଟା ବାଡ଼ି, ତଣ୍ଟିରେ ବୁଜୁଲୀ ଝୁଲୁଛି । ଅଳ୍ପ ବାଙ୍କୁଆ ହୋଇ ବାଟୋଇ ଚାଲୁଛି ସାମ୍ନାକୁ ।

ପଚାରିଲି, "କେତେ ଦୂର ଯିବ ବାଟୋଇ ?"

ନ ଅଟକି କହିଦେଇ ଗଲା, "ବହୁତ ଦୂର, ବହୁତ ଦୂର ।"

କେତେଦିନେ ସାରଙ୍ଗି ବାଜେଇ ଦୃଷ୍ଟିହୀନ ବଡ଼ ବଡ଼ ଆଖିରୁ ଲୁହ ଗଡ଼େଇ ଗଡ଼େଇ ସୁରଦାସଙ୍କ ଭଜନ ବୋଲି ବୋଲି ପଶ୍ଚିମା ଭିକାରି ଜଣେ ଲୋକଗହଳି ଛକବାଟେ ଯାଉଥିବାର ଦେଖିଥିଲି । ତା'ର କଳା କୋଟ୍‌ଖଣ୍ଡିକ ଠାଏ ଠାଏ କଣା ହୋଇଯାଇଥିଲା । ସେ ଘାଡ଼ୋ ପାଟିରେ ବିକଟାଳ କରି ଗାଉଥିଲା—

ପ୍ରୀତି କରି କାହୁ ସୁଖନ ଲହ୍ୟୋ,

ତା'ର ମୁହଁ ଭୁରୁଁଣ୍ଡା ଦିଶୁଥିଲା, ତା'ର ଲୁହଧାର ନିଗିଡ଼ି ଝରୁଥିଲା ଶ୍ରାବଣର ଧାରା ପରି ।

ନଗୁଣ୍ଠିଆ ପର୍ବତ ଉପରେ ସାନ ଝୁଙ୍ଗି ଘରେ କେବେ ଦେଖିଥିଲି ପାଉଁଶବୋଳା ଯୌବନ ଲହଲହ ଟୋକା ସନ୍ନ୍ୟାସୀ ଜଣକୁ । କେତେ ଲୋକ ତା' ପାଖେ ମୁଣ୍ଡିଆ ମାରି ମାନସିକ ଯାଚନ୍ତି । ଗୋରା ଗୋରା ସୁନ୍ଦର ହାତ ଯୋଡ଼ିଏ ଟେକି ସେ ଆଶୀର୍ବାଦ କରେ, ଭୁମାହୋଇ ଉଦାସ ହସଟିଏ ହସିଦିଏ, ଦେଖିଲେ କାନ୍ଦମାଡ଼େ । ସେ ମୌନୀ ।

କେବେ କେନ୍ଦରା ବଜେଇ 'ଗୋବିନ୍ଦଚନ୍ଦ୍ର' ଗୀତ ଗାଇ ଗାଇ ଗଲା ପିଲା ଯୋଗୀଟିଏ, କହିଗଲା—

"ଜୀବନ ଅଟଇ ମିଛରେ ଭୁମର ମରଣ ଅଟଇ ସତ ।"

କେନ୍ଦରା କାନ୍ଦ କାନ୍ଦ ଗଲା ଜୀବନ ଉପରେ ଅଭିମାନ କରି ! ବେଳେ ବେଳେ ଲାଗେ, ଏତିକି ଠିକ୍, ବାକି ସବୁ ମିଛ ।

ଯାହା କଥା ଭାବେ ତା' ପାଇଁ ମନ କାନ୍ଦେ, ଭାବିଲାବେଳକୁ କେହି କାହାର ନୁହେଁ, ସବୁ ଅଡ଼େଇଦିନିଆ, ସବୁ ଫାଙ୍କି ।

ରାଧେଶ୍ୟାମ ଦରବୁଢ଼ା ହେଲାଣି, ତା'ର ପିଲାଏ ଧୂଳିଖେଳ ଖେଳିଲେଣି । ମୋ ବୟସର କେତେ ବୁଦ୍ଧିମନ୍ତ ଲୋକ ପିଲାଙ୍କୁ ଆକଟନ୍ତି, ନାଲି ଆଖି ଦେଖାନ୍ତି, କେହି କେହି ବିଦ୍ୟାବନ୍ତ ଲୋକ ସମସ୍ତ ନଷ୍ଟ କରି ଆପଣାର ଅଭିଜ୍ଞତା ବଖାଣି ବୁଝାନ୍ତି, "ପିଲାଏ ରେ, ଏ ସବୁ ମିଛ, ଏ ସବୁ ବୃଥା, ବୃଥା ।"

ମଣିଷ ପିଲା ବୁଢ଼ାର ବୋଲକର ନୁହେଁ । ଶହେଁକ ଉଠି ଜବାବ୍ ଦିଏ—

"ତମର କ'ଣ ଅଛି ? ତମେ ଭୁମାପନ୍ତ ।"

ମୁଁ ଭାବେଁ ବାଧାଦେବା ପ୍ରୟୋଜନ ନାହିଁ, ଜୀବନର ସୁଅ ଚିରଦିନ ପଡ଼ିଥିବ ମରଣମୁହାଁ, ଆଜି ଭୁଲ୍ କରିବା ସମସ୍ତଙ୍କର କର୍ତ୍ତବ୍ୟ, କାରଣ ଭୁଲ୍ ହିଁ ଅଭିଜ୍ଞତା ଅର୍ଜିବାର ସାରାଂଶ ।

ଆଜି ଭାବୁଛି, କେଉଁଠି ଭୁଲ୍ କଲି କି ?

ଭାବନାର ଥଳକୂଳ ପାଉନାହିଁ, କାରଣ ଭୁଲ୍ ତ ସବୁଠି ।

ଛକି ଗଲା ଯାଉ, ସେ ବି ଭୁଲ୍, ହୁଏତ ।

ଚାରି ମାସ ପରେ ରାଘବ ଘରକୁ ଯାଇଥିଲି । ମାଧବୀ କହିଲା, "ଏତେଦିନ ହେଲା କୁଆଡ଼େ ଯାଇଥିଲ ଭାଇ ?"

ଦେଖିଲି ସେ ବଦଳି ନାହିଁ, କିନ୍ତୁ ମତେ କାହିଁକି ଭଲ ଲାଗେ ନାହିଁ ସେଠି ବସି ରହିବାକୁ, ଚାଲି ଆସିଲି ।

ସହରରେ ବାଟରେ ଘାଟରେ କେବେ କେମିତି ମଞ୍ଜୁଳିକାକୁ ଦେଖେଁ, କଲେଜର ସହପାଠିନୀ ମଞ୍ଜୁଳିକା । ସେ ଗାଡ଼ିରେ ଚଢ଼ି ଚାଲିଯାଏ । ମୋ'ର ମନରେ ଆଦୌ ଉତ୍ସାହ ହୁଏନାହିଁ ।

କାଞ୍ଚନମାଳାର ବର ମୋ'ର ଚିହ୍ନା ଲୋକ । ଗାଁ-ପାଖିଆ ବୋଲି ଅନେକ ଥର ତା' ଘରକୁ ଯିବାକୁ ନିମନ୍ତ୍ରଣ କରେ । ତା'ର ପିଲାଟିଏ ହୋଇଛି । ତା' ଘରକୁ ଯିବାକୁ ମୋ'ର ସମୟ ନ ଥାଏ ।

କେବଳ ଦରକାର ଛଡ଼ା ଅନ୍ୟ ସମୟରେ ଗାଁକୁ ଯିବାକୁ ମନ ହୁଏନାହିଁ ।

ମୁଁ ଖୁବ୍ ବଡ଼ିଯାଇଛି, ଗାଁରେ ମିଶିବାକୁ ସାଙ୍ଗସୁଖ ନ ଥାନ୍ତି । ଗାଁ ମାଇପିଙ୍କ ଟାହି ଟାପର—"ରାଧୁ, ତୁମେ କେବେ ବାହା ହେଉଚ ? ରାଧୁ, ତୁମେ ବାହା ହେଉନା କାହିଁକି ?"—ଭାରି ଶଢ଼ମାଡ଼େ—ଭାବେଁ ଏମାନଙ୍କର ରୁଚି ଏପରି, ବାଜେ କଥା କହି ମଣିଷକୁ ବିରକ୍ତ କରନ୍ତି ।

ଆପଣାର ମଉଜ ସାଙ୍ଗୀମାନେ, କେତେ ଜାତି ରସରସିଆ କଥା କହି ଯେଉଁମାନେ ହସାନ୍ତି, ଯାହାଙ୍କ ପାଖରେ ବସି ପଡ଼ିଲେ ବାରଆଡ଼ର ମଉଜ ସମ୍ବାଦ ଶୁଣିବାକୁ ମିଳେ, ସେମାନଙ୍କୁ ମୁଁ କେଉଁଦିନୁଁ ତାଙ୍କର ନିଜ ଉପାୟରେ ସଙ୍ଗୁଳି ନାହିଁ ।

କେତେ ମେସ୍ ଭାଙ୍ଗିଲାଣି, କେତେ ମେସ୍ ଅଛି ଯେଉଁଠି ଆଜି ମୋ'ର ଚିହ୍ନା ଲୋକ ନାହାନ୍ତି ।

ଆଜି ସେ ପୁରୁଣା କଥା ପ୍ରତି ଆସକ୍ତି ନାହିଁ ।

ଆଜ ମୁଁ ଖବର ରଖିବାକୁ ଉତ୍ସୁକ ନୁହେଁ—କିଏ କ'ଣ କଲା, କିଏ କ'ଣ କରୁଛି ଇତ୍ୟାଦି । ସେଗୁଡ଼ାକ ବାଜେ କଥା, ଯାହା ସାଙ୍ଗରେ ମୋ'ର ଚିନ୍ତା ଲାଗିଯାଇଛି ।

ବାହାଘର ପଡ଼ିଲେ କେତେ ଆଉ କେତେ ବ୍ରତଘରର ନିମନ୍ତ୍ରଣ ଆସେ—ସୁନ୍ଦର କାଗଜରେ ସୁନ୍ଦର ନିମନ୍ତ୍ରଣ । ବେଳେ ବେଳେ ବ୍ରତଘର ଗୀତ । ଖୋଲୁ ଖୋଲୁ ଆଖି ଟେକିଦିଏ ଯାଏଁ, ଦୁଇଥର ବି ଦେଖେ ନାହିଁ, ରଖି ଦେଇଥାଏଁ ସେଇପରି ।

ବଡ଼ ଗମ୍ଭୀର ମୁଁ ।

ଲୋକେ କହନ୍ତି, "ମୁଁ ବଡ଼ ଭଦ୍ରଲୋକ ।"

କେହି ମୋ'ର ଶତ୍ରୁ ନାହାନ୍ତି, ବନ୍ଧୁ କିଏ ବା ଥିବେ, ମୁଁ ଖୋଜେ ନାହିଁ ।

ଘରେ କହନ୍ତି, "ପୁଅ ବୁଢ଼ିଆର ହେଲାଣି, ଘର ସମ୍ଭାଳିବ ।"

ଆରସିରେ ଚେହେରାଟା ଦେଖେଁ, ମନ୍ଦ ନୁହେଁ । ବେଶ୍ ବଳିଷ୍ଠ ଗଢ଼ଣ । କଠିନ ଗମ୍ଭୀର ମୁହଁ । କୁଆଡ଼େ ଥିଲା ଏତେ କଠିନତା ! ମନ୍ଦ ନୁହେଁ । କେବଳ କପାଳ ସାମ୍ନାରେ ଅଳ୍ପ ଟିକିଏ ଚନ୍ଦା ହୋଇଯାଇଛି, କପାଳଟା ଆହୁରି ଚଉଡ଼ା ଦିଶୁଛି । ଗହ୍ୱର ଆଖି, ଆଉ ସରୁ କଠିନ ଓଠ ଦିଇଟା କ୍ଷମତାସୂଚକ ।

ଡାହାଣ ପାପୁଲିରେ ଭାଗ୍ୟରେଖା ଧୀରେ ଧୀରେ ବୃହସ୍ପତି କ୍ଷେତ୍ର ଉପରକୁ ଚଢ଼ୁଛି, ସବୁ ଭଲ ହେବ ।

କେବଳ ରକ୍ତ ରହିକା ଅନଭ୍ୟସ୍ତ ପ୍ରାଣ ଭିତରୁ ତୋଫାନ ଉଠେ, ମନଟା ଚିତ୍କାର କରି କାନ୍ଦେ, ମନେ ମନେ କହେଁ—

"ଛବି—ଛବି ଯଦି ମୋ'ର ହୋଇଥାନ୍ତା ! ବୃଏତ ଜୀବନର ଗତି ହୋଇଥାନ୍ତା ଆଉ ପ୍ରକାରେ !"

ବହୁତ ଦିନ ପରେ—

କଥା ଉଠିଥାଏ ମୁଁ ବାହାହେବି । ଘରୁ ପେଷଣ ଆଉ ଉତ୍ପୀଡ଼ନ, ବାହାରୁ ବହୁତ ପ୍ରକାର ଉପଦେଶ, ସାନ୍ତ୍ୱନା, ସହାନୁଭୂତି ଏବଂ ମୋର ମତ ଠିକଣା କରିବାକୁ ନାନାଜାତି ଚେଷ୍ଟା । ସବୁ ପ୍ରକାର କୌଶଳ ଓ ଷଡ଼ଯନ୍ତ୍ର ଭିତରେ କଣ୍ଟାକଣ୍ଟି ଠେଲାଠେଲି କରି ମୁଁ ଏପର୍ଯ୍ୟନ୍ତ ମୁଣ୍ଡ ଟେକି ରହିଛି, ମୋ'ର କେତେ ବନ୍ଧୁ ଉବିଲେଣି । କାହାର ଦୁଇଟି ଛୁଆ, କାହାର ତିନୋଟି, ଶୁଣିଲେ ହସମାଡ଼େ ।

ସେମାନେ ସମସ୍ତେ ସମାପ୍ତ, ସେମାନଙ୍କ କଥା ସମାଜ ଦୁଇଥର ପଚାରେ ନାହିଁ, କେବଳ ତାଙ୍କର ଘରକରଣା ଯନ୍ତ୍ର କେଉଁଠି ବେସୁରା ବାଜେ, ସମାଜ ବସିଛି ସ୍ୱର୍ଗ କଥା ଉଠେଇ ତାଳ ମାରିବାକୁ ।

ସେମାନେ ସମାଲୋଚନାର ବିଷୟବସ୍ତୁ ।

ମୁଁ ନୁହେଁ । ମୁଁ ଅଦ୍ୟାପି ଅସମାପିକା ।

ମୁଁ ଭାବେଁ, ବଢ଼ି, ଧୋଇ, ମରୁଡ଼ି ପରି ଏ ବିବାହ ସଂସ୍କାର, ଆସେ ମଣିଷକୁ ବୁଢ଼ା କରେଇବାକୁ, ତେଣୁ ବିବାହକୁ ଏଡ଼ି ଚଳି ଆସିଛି ।

କିଏ ଗର୍ବ କରେ ନିଜ ସ୍ତ୍ରୀ କଥା କହି, କିଏ ଦୁଃଖ କରେ, କିନ୍ତୁ ମୁଁ ଦେଖେଁ—ବିବାହିତ ସର୍ବସାଧାରଣ ଆପଣା ଅବସ୍ଥା ପ୍ରତି ଉଦାସୀନ । ବିବାହ ଜୀବନର ଗୋଟାଏ ଅବସ୍ଥା ତାଙ୍କର ମନେ ନାହିଁ ।

ବିବାହ ମତେ ଛୁଏଁ ନାହିଁ ।

ବେଳେ ବେଳେ ଅବଶ୍ୟ ଦୁର୍ବଳ ମୁହୂର୍ତ୍ତରେ—ମୁଁ ଭାବେଁ ମୋ'ର ନିତାନ୍ତ ଆପଣାର ହୋଇ ପାଖେ ପାଖେ ଜଣେ କେହି ଥାଆନ୍ତା, ମୋ'ର ତା'ର ଏକା ମତ ଏକା କାମ, ମୁଁ ତାକୁ ଦେଖି ଖୁସି ହେଉଥାନ୍ତି

ସେତିକବେଳେ ବାହାଘରର ଚିନ୍ତା ଆସେ ।

ମୁଁ ଦୂରକୁ ଦୂରକୁ ସ୍ୱପ୍ନ ଦେଖିଯାଏଁ ଯେ ମୁଁ ବୁଢ଼ା ହୋଇଛି, ମୋ'ର କେହି ନାହିଁ, ମୁଁ ଏକୁଟିଆ । ଏ ଘର ସେ ଘର ହେଉଛି, ଗୃହସ୍ଥ-ମାନେ ଆଦର ଯତ୍ନ କରୁଛନ୍ତି । ମତେ ଲାଗୁଛି ଗୋଟିଏ ଦରିଦ୍ର କୁଣିଆ ପରି ।

ସେତିକବେଳେ—ସେହି ଦୁର୍ବଳ ମୁହୂର୍ତ୍ତରେ, ମୁଁ ଥିରି ଥିରି ମନକୁ ମନ କହେଁ, ମୋ'ର ହାତିଏ ଦରକାର, ଯେ ମତେ ସହିବ, ଆଉ ମୋ'ର ହେବ ।

କିନ୍ତୁ ତା'ର ରୂପ ଗୁଣ ଅନେକ ହେବା ଦରକାର । ମୁଁ ମନେ ମନେ ତାଲିକା କରେଁ, ଯେତେବେଳେ ବାହାରୁ ଆସୁଥିବା ପ୍ରସ୍ତାବକୁ ଯାଞ୍ଚ କରେ, ଦେଖେଁ ତାଲିକାରୁ ଅନେକ ଊଣା ଅଛି, ମନ ଭାଙ୍ଗିଯାଏ ।

ଦିନ ଯାଉଁ ଯାଏ, ମୋ'ର ଦୁର୍ବଳ ଶକ୍ତି କ୍ରମେ ସବଳ ହୁଏ । ମୁଁ ବାହା ହେବାକୁ ପ୍ରସ୍ତୁତ ହୁଏଁ । ମନକୁ ପ୍ରବୋଧ ଦିଏଁ ଏହିପରି କହି କହି ଯେ ମୋ'ର ତାଲିକାରୁ ଊଣା ହେଲେ ମୁଁ ବାହା ହେବି ନାହିଁ, ତେଣୁ ଦୁଃଖ ନାହିଁ, କିନ୍ତୁ ଯେତେବେଳେ ବିବାହ ଠିକଣା ହେଲା ବୋଲି ଧରି ନେବାକୁ ମତେ ମନ ସ୍ଥିର କରିବାକୁ ପଡ଼େ, ମୁଁ ପଛକୁ ହଟେଁ, କ'ଣ ଯେପରି ମତେ ଅଟକେଇ ଦିଏ, ଆଉ ଭାରି ଖରାପ ଲାଗେ ।

ସତେ ମୁଁ ବାହା ହେବି ? ମୋ'ର ସ୍ୱାଧୀନ ଜୀବନ—ସମାଜର ଅବୁଝା ବନ୍ଧାଗତରେ ଛନ୍ଦିବନ୍ଧା ହୋଇଯିବ ? ଅସମ୍ଭବ ।

ଏହିପରି ଅସମ୍ଭବ ଅସମ୍ଭବ କହି ବହୁତ ପ୍ରସ୍ତାବ ସଙ୍ଗେ ମୁଁ ଲୁଚକାଳି ଖେଳିଲି । ନାନା କୌଶଳରେ ଅନେକ ସମ୍ବନ୍ଧକୁ ମୁଁ ପରଖି ଦେଖିଲି । କୌଣସିଠି ଭରସା ହୁଏନାହିଁ, ବିନା କାରଣରେ ନିଜର ମନ ଅଡୁଆ ବାହାର କରେ, ବିବାହ ହୁଏନାହିଁ ।

ତା'ର କାରଣ, ଅସ୍ୱାଭାବିକ ମୋର ମନ ଭିତରର, ସେଠି ଶାନ୍ତ ନିଷ୍ପତ୍ତି ସମ୍ବନ୍ଧେ ଦ୍ୱନ୍ଦ୍ୱ ଚାଲିଛି, ମୀମାଂସା ସମ୍ପୂର୍ଣ୍ଣ ହୋଇନାହିଁ, ତେଣୁ ପଦାକୁ ଅନେଇଲେ ମୁଁ ଅପୂର୍ଣ୍ଣତା ଦେଖେଁ, କୌଣସିଠି ମୋ'ର ରୁଚି ନାହିଁ ।

ଆଦୌ ବାହାଘର ହେବ ନାହିଁ, ଭାବିଲେ ଖରାପ ଲାଗେ, ହେଇଟି ବାହାଘର ହୋଇଯିବ କହିଲେ ଖରାପ ଲାଗେ । ମୋ'ର ମନ ଦୁଇକୂଳ ମଝିରେ ।

ଏହିପରି ଦିନେ, ବହୁତ ଦିନ ପରେ ଭାଉଜଙ୍କ ପାଖରୁ ଖଣ୍ଡେ ଚିଠି ପାଇଲି—

"ରାଧ୍—ଅଗ୍ନିଶିଖା ଭାଜନକୁ ଆଜ କାହିଁକି ପଚାରିବ ? ନାଲଠା-ଫଣିଆ କରି ଚିଠି ଲେଖୁଛୁ, ଚିଠି ଲେଖିବାକୁ ତ ତମର ସମୟ ହୁଏ ନାହିଁ, ଚିଠି ପଢ଼ିବାକୁ ସମୟ ହେବ ତ ?

—ଆମ ରେଣୁକା ବିଷୟରେ ତୁମ ବାହାଘର କରିବାକୁ ତୁମ'ଘର ତାଙ୍କ ଘର ଭିତରେ ଚିଠିପତ୍ର ଚାଲିଥିଲା । ତୁମ ବାପା ବୋଉ ଖାଲି କହୁଛନ୍ତି, ପୁଅର ଯେଉଁଠି ମନ ହେବ, ଆମର ସେଇଠି ମତ । ମୁଁ ଭାବୁଥିଲି ଲେଖିଦେଇଥାନ୍ତି, ହଁ, ତମର ମତ ଅଛି । ପୁଣି ଭାବିଲି, ତୁମେ ସେଇ ରାଧୁ ଅଛନ୍ତି ? ଯଦି ବଦଳିଥିବ, ମା' ଲୋ, ମତେ ଡର ମାଡ଼ିଲା । ତମକୁ ମୋ ରାଣ ସତ କହିବ, ରାଧୁ, ତୁମର କ'ଣ ମତ ନାହିଁ ? କେଉଁ ଗୁଣରେ ରେଣୁ ଊଣା ? ତୁମେ ଗୁଣ ବୁଝିବ କି ନା ଟଙ୍କାକୁ ବାହା ହେବ ? ମୁଁ ଜାଣେ ରେଣୁ ତୁମକୁ ଭାରି ଭଲ ପାଏ, ସବୁବେଳେ ବାଁରେଇ ହଉଥିବ । କାନ ଡେରି ରହୁଥିବ ଖାଲି ତମର କଥା ଶୁଣିବା ପାଇଁ । ସୁନାଟି ପରା, ତୁମେ ନାହିଁ କର ନାହିଁ । ମୋ ରାଣ, ଚଞ୍ଚଳ ଫେରନ୍ତା ଡାକରେ ଜବାବ୍ ଦବ ।

ମୁଁ ଯାଉଛି, ତେଣେ ତରକାରୀ ବସେଇ ଦେଇ ଆସିଛି । ତର ତର ହେଲି, ଅକ୍ଷରଗୁଡ଼ାକ ବାଙ୍କୁରା ବାଙ୍କୁରା ହୋଇଗଲା । ଭୁଲିବ ନାହିଁ, ଚିଠି ଦେବ ।"

ସବୁ ଧାରଣା ବଦଳି ଗଲା । କେତେ ଦିନର ବନ୍ଦୀ ସ୍ମୃତି ତନ୍ତ୍ରୁ ରେଣୁକା ଉଠିଲା—କେମିତି ହେବଣି ସେ···!

ମନକୁ କଠିନ କଲି । ଜବାବ୍ ଲେଖିଦେଲି—"ମତେ କ'ଣ ତୁମେ ପଚାରୁଛ ? ତୁମଠୁଁ କ'ଣ ମୋ'ର ଭଲ ମନ୍ଦ ମୁଁ ବେଶି ବୁଝେ ? କେଉଁ କଥାରେ ଭଲ ତୁମର ଅବାଧ ହୋଇଛି ଯେ ଇଂରେଜ କାଇଦାରେ କ୍ଷମାପ୍ରାର୍ଥନା ମାଗିଲା ଭଳି ଥଙ୍ଗେଇ ଥଙ୍ଗେଇ ହୋଇ ତୁମେ ଚିଠି ଲେଖୁଛ ? ମତେ କିଛି ପଚାର ନାହିଁ—ଯାଃ ।"

ମୁଁ କଣ ଦେଖେଁ—ହିଁ, ରେଣୁକା ଭଲ ପିଲା, ମୁଁ ତାକୁ ଭଲ ପାଉଥିଲି । କିନ୍ତୁ ମୁଁ ତାକୁ ବହୁଦେବା ଭଳି କେତେଦୂର ତା'ର ଉପାଦେୟତା, କେତେ ମୁଁ ତାକୁ ଦେଖିଛି—କ'ଣ ମୁଁ ତା'ର ଜାଣେ ? ଅନେକ ପ୍ରଶ୍ନ ଯାହାର ଜବାବ୍ ନାହିଁ ।

ଏବେଁ ବହୁଘର ପିଲାଖେଳ ନୁହେଁ, ଦୂରରୁ ଦେଖିବା ଓ ଦାୟିତ୍ୱ ମୁଣ୍ଡେଇବା ଭିତରେ ତଫାତ୍ ଅନେକ । ଥଟ୍ଟା ନକଲରେ ଗେଲରେ ଗେଲରେ ପରିଚୟ ଆରମ୍ଭ ହୋଇଥିଲା । ରହିଥିଲା ଯେଉଁଠି ସେଇଠି । ଆଜ ବର୍ତ୍ତମାନ—ବହୁଘର ହେବ । ସେତିକ ହେବ ଜୀବନଯାକ ମୋ'ର, ଆଜ ଅଧିକ ନୁହେଁ, ଯେତିକ ରେଣୁକାଠି ଆବଦ୍ଧ ।

ତା' ବିଷୟରେ ଅନେକ ପ୍ରଶ୍ନ ମନରେ ଉଠେ, ବେଳେ ବେଳେ କେଉଁ ଖରାପ ଲାଗେ, ଏବେଁ—

"ରାଧେଶ୍ୟାମ, ବର୍ତ୍ତମାନ ବି ସମୟ ଅଛି, ତା'ପରେ ନେଡ଼ଗୁଡ଼ କହୁଣୀକୁ ବୋହିଯାଇଥିବ, ବୁଝିଆର !"

ଦଣ୍ଡେଲୋକଙ୍କ ଖୁସି ଆନନ୍ଦରେ ପୁଣି କେତେବେଳେ ନିଜେ ଖୁସି ହୁଏଁ । ମନ ଭିତରର ସବୁ ଓଲଟା ଚିନ୍ତାକୁ ପଛକୁ ଠେଲିଦେଇ କହେଁ, "ସବୁଥିରେ ଦୁଇପାଖ ଅଛି । ଭାବୁଥିଲେ ଯୁଗ ପାହିଯିବ, ସବୁ ଜିନିଷ ସମାନ ।"

ମୁଁ ପ୍ରସ୍ତୁତ ହେଲି, ବହୁଘର ସରିଗଲା । ହଠାତ୍ କେମିତି ସରିଗଲା ଆଶ୍ଚର୍ଯ୍ୟ ହେଲି, ଏଡ଼େ ସହଜରେ ସୁରୁଖୁରୁରେ ଗୋଟାଏ ନିହାତି ଅଚିହ୍ନା ଜିନିଷ ଶେଷ ହେଲା କପରି ?

ବନ ଯେମିତ ଥିଲା ସେମିତ ଅଛି । ମଣିଷ ଯେମିତ ଥିଲେ ସେମିତ ଅଛନ୍ତି । ପୃଥିବୀର କିଛି ପରିବର୍ତ୍ତନ ଘଟିନାହିଁ, ଅଥଚ, ମୋ'ର ଜୀବନର ସରିଛି ।

ତାଙ୍କ ଘରେ ବଡାବଡବେଳେ ପୁରୁଣା ଖଟରେ କନ୍ଦା ବୋବା ଲାଗିଲା, କାନଡେଇ ରେଣୁକାର କାନ୍ଦଣା ମୁଁ ଶୁଣେ, ମନ କଅଁଳ ହୋଇଯାଏ । ମୋ'ର ଜୀବନ୍ତ ଭଲପାଇବା ଏଇଠୁ ଆରମ୍ଭ । ରେଣୁକା ପ୍ରତି ମୋ'ର ଦୟା ହେଲା । ପ୍ରତିଜ୍ଞା କଲି ମୁଁ ତା'ର ସୁଖ ଦୁଃଖର ଭାଗ୍ୟ ନେବ, ମୁଁ ତାକୁ ଖୁସି ରଖିବ । ମୁଁ ଜୀବନ୍ତ, ଆଜ ସେ ମୋ ଜୀବନର ଅଧେ ।

ଗହଳ ଚହଳ କମିଗଲା, ବହୁତ ରାତି ହୋଇଥାଏ, ଜହ୍ନଟା ଗୋଟାଏ କରକୁ ଝାଙ୍କି ପଡ଼ିଥାଏ । ପଦାରେ ବସି ଆକାଶକୁ ଅନେଇଁ-ଥିଲି, ଅନ୍ୟମନସ୍କ ହୋଇ ଭାବୁଥିଲି ମୋ'ର ଜୀବନର କଥା । କାନ୍ଧରେ କାହାର ଥଣ୍ଡା ହାତ ବାଜିଗଲା, ଚମକି ପଡ଼ିଲି । ଦେଖିଲି ନବ ମଳ ମଳ ଆଖିରେ ଭାଜିକବୋଜ । ରହସ୍ୟ ଲଗେଇ କହିଲେ—

"କି ଭାଇ, କ'ଣ ଏଇଠି ଧ୍ୟାନରେ ଖାଲି ବସିଥିବ କି? ତେଣେ ଯେ ପିଲାଟା ଏକୁଟିଆ ବସିଛି, ସେ କଥା ଭାବୁନା ଯୁଦ୍ଧା ଟିକଏ? ଯାଅ ।"

ମୁଁ କହିଲି, "କାହିଁକି ତୁମେ ଯାଉନା, ମୁଁ ମୋ'ର ବସିଛି, କାହିଁକି ଗୋଳମାଳ କରୁଛ ଭଲା ?"

ମୋ'ର ହାତ ଧରି ଉଠେଇ ଦେଇ କହିଲେ—

"ହେଁ—ପିଲାଟିଏ ହେଇ ଯାଉଛନ୍ତି ମ, କିଛି ଜାଣନ୍ତି ନାହିଁ, ଯାଉଛ ନା କାନ ମୋଡ଼ିବ ଦେଖିବ ?"

ସିଏ ଓଡ଼ାର ମତେ ସେ ନେଇ ଗଲେ, ଘର ଭିତରକୁ ଠେଲିଦେଇ କବାଟ ବନ୍ଦ କରିନେଲେ । ଲାଜରେ ମୁଁ ଜଳି ଯାଉଥାଏ ।

ସେ ଚାଲିଯିବାର ପାଦ ଶବ୍ଦ ଶୁଭିଲା । କବାଟପାଖେ ଥିର ହୋଇ ଠିଆ ହୋଇଥାଏଁ ।

କେମିତି ଗୋଟାଏ ଅଖାଡୁଆ ଲାଗୁଥାଏ । ସମସ୍ତେ ଜାଣନ୍ତି, ମୁଁ ବି ଜାଣେ, ମୁଁ ସଚ୍ଚରିତ୍ର ପିଲା, ମୁଁ ପ୍ରାଚୀନ, ମୁଁ ଖାଣ୍ଟି, ମୋ'ର ଧରଣ-ଧାରଣରେ କେଉଁଠି ଏତେ ଟିକିଏ ବୋଲି ମଇଳାଧୂଳି ନାହିଁ । ଏତେଦିନ ସ୍ତ୍ରୀଲୋକ ବିଷୟରେ ମୋ'ର ଧାରଣା ଯାହା-କିଛି ସବୁ ମନେ ମନେ—ଆଜି କିଛି ଭାବିବାକୁ ମନ ଭିତରେ ସବୁ ସଂସ୍କାର ବିଦ୍ରୋହ କରିଉଠେ ।

ଆଉ ଆଜି, ଏ କ'ଣ ହେଉଛି ? ଘୁଣରେ କିଏ ଧଡ଼ିମୁସ୍ ପିଟୁଥାଏ, କ'ଣ କେମିତି ଲାଗୁଥାଏ । ନିର୍ଜନରେ ବସି କାହା ବିଷୟରେ ମନେମନେ ଚର୍ଚ୍ଚା କରିବା ଭିନ୍ନେ, ସେଥିରେ ଆପେ ସାହସ ହୁଏ । ଆଜି ସମାଜ ଆଗରେ, ସମାଜର ଅପେକ୍ଷମାଣ ଚକ୍ଷୁ ଆଗରେ ଏକା ଘରକେ ଗୋଟାଏ ସ୍ତ୍ରୀଲୋକ ସାଙ୍ଗରେ ଏକାଠି ରହିବା କି ବିପଦ ! କି ଲାଜ କଥା ! ନିଜେ ଭାଉଜବୋଉ ଆସି କବାଟ କିଳିନେଲେ !—ଭାଉଜବୋଉ—ଯାହାଙ୍କୁ ମୁଁ ଆପଣାର ବଡ଼ ଭଉଣୀ କି ମାଆ ପରି ଦେଖି ଆସିଛି !······ଛି ଛି ।

ସବୁ ଶବ୍ଦ ବନ୍ଦ ହେଲା ।

ଚୁପ୍‌ଚାପ୍, ଦେହର ପରି ଅନେଇ ଦେଖିଲି, ଘର ଭିତରେ ହୋଇ ସେ ଦୂର କଣରେ ଓଢ଼ଣା ପକାଇ ମୁହଁକୁ ତଳକୁ ପୋତି ମେଞ୍ଚାମେଞ୍ଚି ହୋଇ ବସିରହିଛି ସେ ।

ମୋ'ର ସଂସ୍କୃତି, ମୋ'ର ଆଦର୍ଶ, ମୋ'ର ଏତେଦିନର ସବୁ ଗଢ଼ାଗଢ଼ିର ଶେଷ ପରିଣାମ—ସବୁ ହୁଏତ ସେ ସାର୍ଥକ କରିବ । ସେ ମୋ'ର ସହକର୍ମିଣୀ ହେବ । ସୁଖରେ ଦୁଃଖରେ ସବୁଥିରେ ସେ ଆଉ ମୁଁ । ବାପଘରଠୁଁ, ପିଲାଦିନର ଖେଳର ସାଥୀମାନଙ୍କଠାରୁ, ସମସ୍ତଙ୍କଠାରୁ ସମ୍ବନ୍ଧ ତୁଟାଇ ଆସିଛି ସେ । ତା'ର ଆଜି କେହି ନୁହନ୍ତି । ମୋ'ର ସହାନୁଭୂତି ଆସିଲା ।

କାନଡ଼େର ସ୍ୱରଆଡ଼କୁ ନଧାକରି ସହାନୁଭୂତି ସହିତ ମୁଁ ମୋ'ର ଦେହର ଶ୍ରେକ ବଢ଼େଇବାକୁ ଧାବିଗଲି, ମୁଁ ପୁରୁଷ, ସେ ସ୍ତ୍ରୀ ।

ସ୍ନେହ ସହାନୁଭୂତି ସହିତ କାମନା ନେଇ ଆପଣା ମନକୁ ଚେକଦେଇ ଧୀରେ ଧୀରେ ସେଇ ମେଞ୍ଚମାଞ୍ଚ ମୂର୍ତ୍ତି ପାଖକୁ ଗ୍ଲଲଯାଇ ଓଢ଼ଣା ଟେକଦେଇ ମୁଁ ଧୀରେ ଧୀରେ ଡାକଲି—

"ରେଣୁ—"

ନିଦ ତଳ ତଳ ଆଖିରେ ଟିକଏ ହସିଦେଇ ପୁଣି ସେ ଓଢ଼ଣା ଦେଇ ମୁହଁ ତଳକୁ ପୋତିଦେଲା । ତା'ର ମୁହଁକୁ ଟେକିଧରି ପୁଣି ଡାକଲି, "ରେଣୁ—ରେଣୁ— ।"

ବାସ୍ତବ ଆଉ ଆଦର୍ଶର ସଂଘର୍ଷରେ ମୋ'ର ମନ ଦବିଗଲା, ଭାବିଲି—ହବୁ କ'ଣ ଏତିକ ?

ଏତେଦିନର ଜୀବନର ସବୁ ଅଭିଜ୍ଞତାର ରୂପ ଛାଇପରି ଗ୍ଲଲିଗଲା ଭାସି ଭାସି, ତା'ର ପରିସମାପ୍ତି—କେବଳ ଏତିକ ।

ଏଣିକ ସ୍ୱପ୍ନରେ ଲାଗିରହିଲା କେବଳ ଏତିକ, ସୀମାହୀନ ବିସ୍ତୃତ ବନ ହୋଇଯାଇ ଦେଖା ଦେଇଗଲା କେବଳ ଗୋଟିଏ ଗୋଲାପ, ତା'ର କଣ୍ଟା ଆଉ ଫୁଲ ସମେତ ।

ସବୁ ଧାରଣା ଜବରଦସ୍ତି ତଳକୁ ବୁଝିଦେଇ ମୁଁ ଆନନ୍ଦ ଉଜୁଆଁରେ ମନ ଦେଲି, ଭାବିଲି, ଜୀବନରେ କର୍ତ୍ତବ୍ୟ ବହୁତ, ଅନୁଭୂତି ଆହୁରି ବେଶି, ଅନ୍ତତଃ ଆଜି ଏତିକ ।

ରେଣୁକାର ଲାଜ-ସଙ୍କୋଚ ଖୋଲିଦେବାକୁ ମନ କରି ମୁଁ ପଛ କଥା ସ୍ମରଣ କରେଇ ଦେଇ ଆରମ୍ଭ କଲି—

"ରେଣୁ, ମନେଅଛି ନା— ?"

ଭାବଥିଲି, ଛବି ଯିବା ସାଙ୍ଗେ ସାଙ୍ଗେ ମୋ'ର ଭଲପାଇବା ସରିଥିଲା । ଦିନୁଦିନ ରେଣୁକାର ମୋହରେ ବୁଡ଼ିରହି ମୁଁ ଆପଣାର ବିଶ୍ୱାସ ଛଡ଼ାଇ ନେଲି ଯେ ଛବିକୁ ମୁଁ ବୋଧହୁଏ ସେତେ ଭଲ ପାଇ ନ ଥିଲି । ଛବି ଆଉ ମୋ' ମଧ୍ୟରେ ଗୋଟାଏ କ୍ଷଣିକ ମୋହ ବଢ଼ି ଉଠିଥିଲା, ସେ ଯୌବନର ସ୍ୱରୂପ, ଟୋକା-ଟୋକୀ ଏକାଠି ହେଲେ ସେପରି ବୋଧହୁଏ ଘଟିଥାଏ । ଯଦି ସେ ପ୍ରକୃତ ଭଲପାଇବା ହୋଇଥାନ୍ତା, ମୁଁ ଛବିକୁ ଛାଡ଼ି ରହିଥାନ୍ତି କପରି ? ଛବି ବା ସ୍ୱାର୍ଥତ୍ୟାଗ ନ କରିଥାନ୍ତା କାହିଁକି ? ଏପରି ଭାବିଲେ ସବୁ ପ୍ରଶ୍ନ ନିଜେ ନିଜେ ଛୁଟେ । ପୁଣି ବେଳେ ବେଳେ ଛବି ଆଉ ରେଣୁଙ୍କୁ ଏକାଠି ତୁଳନା କରି ଯେତେବେଳେ ମୁଁ ରେଣୁଠିଁ ଯାହା ଅଭାବ ଛବିଠି ତାହା ପୂର୍ଣ୍ଣ ରହିଛି ଦେଖେଁ, ରେଣୁ ପ୍ରତି ମୋ'ର କର୍ତ୍ତବ୍ୟର ଡୋର ଟଣାଓଟରା ଭାବରେ କଟକଟ ମଡ଼ମଡ଼ ହୁଏ, ମୁଁ ସେତେବେଳେ ଛବି ଉପରେ ଅଭିମାନ କରେଁ, ମନେ ମନେ ତା'ର ଦୋଷ କଳ୍ପନା କରି ଦେଖେଁ । ଛବି ଉପରେ ପ୍ରତିଶୋଧ ନିଏଁ ମୁଁ ରେଣୁକାକୁ ଆହୁରି ଗେହ୍ଲା ଆଦର ଦେଖେଇ ।

ଛବି ବି ବଡ଼ ହୋଇଛି ତ । କିଏ ଜଣେ କହୁଥିଲା, ତା'ର ଶାଶୁ ଶ୍ୱଶୁର ତାକୁ ଦେଖିପାରୁ ନାହାନ୍ତି ବୋଲି । ମତେ ଭିତରେ ଭିତରେ ସେତେ ଖରାପ ଲଗିଲା ନାହିଁ ଶୁଣିବାକୁ । ତା'ର ପତନରେ ମୋ'ର ଉତ୍ଥାନର ଆନନ୍ଦ ଅବଶ୍ୟମ୍ଭାବୀ ବୋଲି ମୁଁ ଧରି ନେଇଥିଲି ।

ଆମର ବିବାହିତ ଜୀବନର ପହିଲି ଭାଗ ଖୁବ୍ ଭଲ ଚାଲିଥିଲା । ରେଣୁକା ସେତେବେଳେ ଖେଳେଣା କଣ୍ଢେଇଟିଏ ପରି, ସେ ନିଜକୁ ପ୍ରକାଶ କରିବାକୁ ସୁଯୋଗ ପାଇନାହିଁ, ଯେ ଯେପରି ଚଳେଇଲେ, ସେ ସେପରି ଚାଲେ । ତା' ପିଛା ମୋ'ର ଅନେକ ସମୟ ଯାଏ । ସେ ଯାହା ଅଳ୍ପ କଥା କହେ, ମୁଁ ତହିଁରେ ଆମୋଦ ପାଏଁ, ଅନେଇଁ ରହିଥାଏ ତା ଆଡ଼କୁ ତା'ର ରକ୍ତମାଂସର ଗଠନର ଆନନ୍ଦକୁ କଳ୍ପନା କରି ।

ଲୋକଗହଳରେ ଦିନଯାକ ରେଣୁକା କେଉଁଆଡ଼େ ଛପି ରହି-ଥାଏ । ସେତେବେଳେ ତା' ଉପରେ ଅଧିକାର ସମାଜର ବେଶି । ନୂଆବୋହୂ ସେ, ସମସ୍ତେ ଦେଖିବାକୁ ଆସନ୍ତି, ବନ୍ଧୁତା କରିବାକୁ ଆସନ୍ତି । ଦିନବେଳେ ତା'ର ଗୁଣ ମୁଁ ପଦାରେ ଶୁଣେଁ, ସେ ସୁନ୍ଦରୀ, ସେ

ଘର ସୁଧାର, ସେ ଘର ଲଜକୁଳୀ, କେବଳ ଭଦ୍ର ଦସ୍ୟୁାର୍ଦ୍ର ବିଶେଷଣ । ନାନା ଉପାୟରେ ଦିନବେଳେ ମୁଁ ତାକୁ ଉର୍କି ମାରି ଦେଖେଁ । ଧରାପଡ଼ିଲେ ଲଜ୍ଜିତ ହୁଏଁ । ମୁଁ ଭାବେଁ ଏତିକ ଲୁଚକାଳିର ପିଲାଖେଳରେ ମଧ୍ୟ ସୁଖ ଅଛି, ଚଳେଇ ନେଲେ ସବୁ ସୁଖର ହୁଏ ।

ରାତିହେବା ସାଙ୍ଗେ ସାଙ୍ଗେ ମୁଁ କ୍ରମେ ଉତ୍କଣ୍ଠିତ ହୁଏ । ଉତ୍କଣ୍ଠା ଆତୁର ଆନନ୍ଦକୁ ବଢ଼େଇ ଦିଏ । ରାତିସାରା ଫୁସୁରୁ ଫୁସୁରୁ ହୋଇ ଗପ କରୁଁ ଯେତେ ସମସ୍ତ ସମ୍ଭବ, କେତେ ସୁଖଦୁଃଖ ଦିନଯାକର ଅଭିଜ୍ଞତା ତା'ର ଆଉ ମୋ'ର । ଘର ଭଲଲାଗେ ।

ସମାପିକା ଭଲ ଲାଗିଲା । ଆକାଶର ଆଦର୍ଶ, ତା ପଛରେ ଗୋଡ଼େଇବା ଖାଲି ସାର ହୁଏ, ସେ ଧରାଦିଏ ନାହିଁ, ଶୋଷ ବଢ଼ାଏ ।

ଆଜି ଏ ରେଣୁକା, ସେ ଗୋଟାସୁଦ୍ଧା ମୋ'ର ।

ଦଖଲ ଓ ଅଧିକାର ମନକୁ ଦମ୍ଭ ଦିଏ । ଲୋକେ ଘର ତୋଳିଲେ ପେଟରେ ଓଦାକନା ଦେଇ ସୁଦ୍ଧା ମୋଟା ହୁଅନ୍ତି ।

ଏଇ ରେଣୁକା ମୋ'ର, ଯା'ର ଦେହ ଗୋଟାକ, ମନ, ଯା'ର ମଣିଷପଣିଆଁ, କେବଳ ମୋ'ର ଏକୁଟିଆ ।

କେବେ ମୁଁ ପାଣି ଅପେକ୍ଷା ଶୋଷକୁ ଭଲ ପାଉଥିଲି ମୋ'ର ମନେ ନାହିଁ ।